# ବିଶ୍ୱ-ବିସ୍ମୟ ୨



ପ୍ରମୋଦ କୁମାର ମହାପାତ୍ର

# ବିଶ୍ୱ ବିସ୍ମୟ

ଲେଖକ :
ପ୍ରମୋଦ କୁମାର ମହାପାତ୍ର, M. Sc

ପ୍ରକାଶକ :
ଗୋବିନ୍ଦ ଚରଣ ପାତ୍ର
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦବିହାରୀ, କଟକ ୭୫୩ ୦୦୨

ପ୍ରଥମ ପ୍ରକାଶ :
ମହାବିଷୁବ ସଂକ୍ରାନ୍ତି—୧୯୮୮

ପ୍ରଚ୍ଛଦ :
ଶିବ ପାଣିଗ୍ରାହୀ

ମୁଦ୍ରଣ :
ଗୁରୁପ୍ରସନ୍ନ ପ୍ରେସ
ଖୋଲସାହି (ନିଜ କଲୋନୀ)
କଟକ-୧

**BISWA BISMAYA**

by
Pramod Kumar Mohapatra, M. Sc.

Published by
Gobinda Charana Patra
Orissa Book Store
Binodbehari, Cuttack-2

1st Edition : 1988

Dr. RADHANATH RATH,
Editor, The "Samaj"
&
President, Servants of the
People Society, New Delhi
&
Ex-Pro-Chancellor, Orissa
University of Agriculture &
Technology

Phone-20183

Gopabandhu Bhawan
Cuttack-753 001

Date 6 . 4 . 88

ଆୟୁଷ୍ମାନ ପ୍ରମୋଦଙ୍କ ଲିଖିତ "ବିଶ୍ୱ ବିସ୍ମୟ" ପୁସ୍ତକଟି ପଢ଼ି ମୁଁ ଅତ୍ୟନ୍ତ ଆନନ୍ଦିତ ହେଲି । ସେ ଏହି ପୁସ୍ତିକାଟିରେ କୋମଳମତି ପିଲାଙ୍କ ପାଇଁ ବିଜ୍ଞାନ-ଜଗତର ବହୁ ବିସ୍ମୟକର ଘଟଣା ଉପସ୍ଥାପିତ କରି ନିଜର ସରଳ ଓ ସାବଲୀଳ ଭାଷା ମାଧ୍ୟମରେ ସେମାନଙ୍କର ହୃଦୟକୁ ଛୁଇଁ ପାରନ୍ତି । ପୁସ୍ତକରେ ସନ୍ନିବେଶିତ ଅଧିକାଂଶ ପ୍ରବନ୍ଧ ଆଗରୁ ପତ୍ରପତ୍ରିକାରେ ପ୍ରକାଶିତ ହୋଇ କେବଳ ଶିଶୁମାନଙ୍କର କାହିଁକି, ବୟସ୍କ ସଚେତନ ପାଠକମାନଙ୍କର ମଧ୍ୟ ଦୃଷ୍ଟି ଆକର୍ଷଣ କରିଛି । ଓଡ଼ିଆ ବିଜ୍ଞାନ ସାହିତ୍ୟକୁ ଏହା ଏକ ସମୟୋପଯୋଗୀ ଅବଦାନ ବୋଲି ମୋର ବିଶ୍ୱାସ । ସଂପ୍ରତି ଆମ ଦେଶରେ ବୈଜ୍ଞାନିକ ମନୋବୃତ୍ତିର ବିକାଶ ପାଇଁ ଜାତୀୟ ପ୍ରଚେଷ୍ଟା ହେଉଅଛି । ପିଲାଦିନରୁ ଛାତ୍ରଛାତ୍ରୀଙ୍କର ମାନସିକ ବିକାଶ ଏହିଭଳି ପୁସ୍ତକ ଦ୍ୱାରା ସମ୍ଭବ ଏବଂ ଏଥିରୁ ଲବ୍ଧ ଜ୍ଞାନ ହିଁ ବୈଜ୍ଞାନିକ ମନୋବୃତ୍ତିର ଯଥାର୍ଥ ବିକାଶ ଘଟାଇବ ।

ମୁଁ ତରୁଣ ଲେଖକ ପ୍ରମୋଦଙ୍କର ଉଜ୍ଜ୍ୱଳ ଭବିଷ୍ୟତ କାମନା କରୁଛି ।

ରାଧାନାଥ ରଥ



Dr. J. K. ROY
Senior Scientist
(Plant Breeding)

CENTRAL RICE RESEARCH INSTITUTE
(Indian Council of Agricultural Research)
Cuttack-753006
(ORISSA), INDIA
Date 16. 11. 87

Dear Mr. Mohapatra,

The Sunday edition of daily "Samaj" has become a special attraction for me now a days which carries some popular articles written by you in simple Oriya language on Scientific subjects related to plant life. Though your articles are meant for Children, they are equally useful for all classes of people. The articles on "ଗଛର ବୟସ କେତେ ?, ଘର ଭିତରେ' କଙ୍କାଳ, ସମୁଦ୍ର ଭିତରେ ଘୋଡ଼ା, ଗଛ ମାଂସ ଖାଏ, କଥା କହୁଥିବା ପଥର, etc are well written, informative and educative as they explain the intricate Scientific proceses governing the phenomenon in simple language. I feel, it will be a good endeavour in your part to compile these articles in the form of a book which will be very useful to school children of Orissa in particular and all those interested in plant science in general.

Wishing your endeavour all success and with regards.

Your sincerely
Sd.—
(J. K. Roy)
16 . 11 . 87

●

Dr. (Mrs.) KAMAL KUMARI PATTANAIK
*D. Phil. (Alld). Dip-in-German*

Professor and Head of the Department
Parija P. G Department of Botany.

Ravenshaw College,
Cuttack-753003
Date 12 . 12 . 87

ସ୍ନେହର ପ୍ରମୋଦ,

ବିଜ୍ଞାନ ଏକ ଜଟିଳ ପାଠ । ଏହାକୁ ସାଧାରଣ ଲୋକ ସହଜରେ ବୁଝିପାରେନି । ଏଇ ଧାରଣା ଆମ ମନରୁ ଧୀରେ ଧୀରେ ଲିଭି ଆସିଲାଣି । ସରଳ, ସାବଲୀଳ ଭାଷାରେ ବିଜ୍ଞାନକୁ ଲୋକଙ୍କ ଗ୍ରହଣରେ ପହଞ୍ଚାଇବାରେ ସହାୟତା କରିଛନ୍ତି କେତେକ ମୁଷ୍ଟିମେୟ ଓଡ଼ିଆ ଲେଖକ, ଲେଖିକା । ତା ଛଡ଼ା ପିଲାଙ୍କ କଅଁଳ ମନକୁ ଛୁଇଁଲା ଭଳି ବିଜ୍ଞାନ ଲେଖା ସୃଷ୍ଟି କରିବା ପାଇଁ ମଧ୍ୟ ଚହଳ ପଡ଼ିଲାଣି । ଏଥିପାଇଁ ବିଭିନ୍ନ ଦୃଷ୍ଟିଭଙ୍ଗୀରେ ଶିଶୁମାନଙ୍କ ପାଇଁ ବିଜ୍ଞାନର ରୂପ ଦିଆଗଲାଣି । ପିଲା କପରି ପିଲାଟି ଦିନରୁ ବିଜ୍ଞାନ ପ୍ରତି ଆକୃଷ୍ଟ ହେବ — ଏଇ ହେଲା ବିଂଶ ଶତାବ୍ଦୀର ଏକ ମୂଳମନ୍ତ୍ର । କାରଣ ଏଇ ୩୦ ବର୍ଷ ମଧ୍ୟରେ ବିଜ୍ଞାନ ପ୍ରୀତି ଦ୍ରୁତ ବେଗରେ ଛୁଟି ଚାଲିଛି । ଆଜିର ଶିଶୁକୁ ଏଥି ସହିତ ତାଳ ଦେଇ ଚାଲିବାକୁ ପଡ଼ିବ । ତେବେ ସିନା ଭବିଷ୍ୟତରେ ବିଜ୍ଞାନ ଜଗତ ଆହୁରି ଜଟିଳ ସମସ୍ୟାକୁ ସେ ସମାଧାନ କରି ପାରିବ !

ଏଇ କେତେ ଦିନ ତଳେ "ସମାଜ" ପତ୍ରିକାରେ ତମର କେତୋଟି ଲେଖା, "ଶିଶୁମାନଙ୍କ ପାଇଁ ବିଜ୍ଞାନ" ପଢ଼ିଲି । ପିଲାଙ୍କ ପାଇଁ ଏଇ ଲେଖାଗୁଡ଼ିକ ବେଶ୍ ଉପାଦେୟ ହେବ ବୋଲି ମୋର ବିଶ୍ୱାସ । ସେହି ଲେଖାଗୁଡ଼ିକ ମଧ୍ୟରୁ "ଗଛର ବୟସ କେତେ ଓ

ଗାଛ ବା ଡାଏରୀ ଲେଖେ, ରାକ୍ଷସ ଜୀବ ଡାଏନୋସରସ, କଥା କହୁଥିବା ପଥର ବେଶ୍ ଚମତ୍କାର ହୋଇଛି ।

ତୁମର ଏଇ ପଦକ୍ଷେପକୁ ମୁଁ ସ୍ୱାଗତ ଜଣାଉଛି । ତୁମର ଲେଖନୀ ଆହୁରି ସୁଦୃଢ଼ ହେଉ । ପିଲାଏ ଅଧିକରୁ ଅଧିକ ବିଜ୍ଞାନ ପ୍ରେମରେ ପଡ଼ନ୍ତୁ । ଏହା ହିଁ କାମନା ।

ଶୁଭେଚ୍ଛା ସହ
ତୁମର ମଙ୍ଗଳାକାଂକ୍ଷୀ
Sd—କମଳ କୁମାର ପଟ୍ଟନାୟକ



ଏହି ପୁସ୍ତକଟି ପାଇଁ ମୋର ଯେଉଁ ସହୃଦୟ
ବନ୍ଧୁମାନେ ନାନା ଭାବରେ ମୋତେ ପ୍ରେରଣା
ଦେଇଛନ୍ତି ସେଇମାନଙ୍କ ହାତରେ—

**ଲେଖକ**

# ସୂଚୀ





# ପୃଥିବୀର ଆଦ୍ୟପ୍ରାଣୀ—ଆମିବା

ପୃଥିବୀ ପୃଷ୍ଠରେ ପ୍ରଥମ ପ୍ରାଣୀ କିଏ, ଏହାର ଆକୃତି, ପ୍ରକୃତି କିପରି, ଏହାର ଜନ୍ମ କିପରି ହେଲା—ଏ ବିଷୟରେ ବହୁ ଆଲୋଚନା ଓ ଗବେଷଣା କରାଯାଇଛି । ପୃଥିବୀ ଜନ୍ମ ବେଳେ ଏକ ଉତପ୍ତ ଗ୍ୟାସିୟ ପିଣ୍ଡ ଥିଲା ଏବଂ ଏହା ପୃଷ୍ଠରେ କୌଣସି ଜୀବନର ସତ୍ତା ନଥିଲା । ସବୁବେଳେ ବଡ଼ ଧରଣର ବିସ୍ଫୋରଣ ଏହା ପୃଷ୍ଠରେ ଲାଗିରହିଥିଲା । କ୍ରମେ ଏହା ଥଣ୍ଡା ହେଲା । ବାୟୁମଣ୍ଡଳର ସୃଷ୍ଟି ଏହା ପୃଷ୍ଠରେ ହେଲା ଓ ଜଳର ସୃଷ୍ଟି ହୋଇ ଜଳରୁ ହିଁ ଜୀବନ ସୃଷ୍ଟି ହୋଇଛି ବୋଲି ଅନୁମାନ କରାଯାଏ । କୌଣସି ଏକ ପ୍ରାକୃତିକ ରାସାୟନିକ ପ୍ରକ୍ରିୟା ଦ୍ୱାରା ଜଡ଼ ପଦାର୍ଥରୁ ହିଁ ଜୀବନର ଉତ୍ପତ୍ତି ହୋଇ ସେଥିରୁ କ୍ରମ ପରିବର୍ତ୍ତନ ଘଟି ଏକକୋଷୀ ପ୍ରାଣୀର ସୃଷ୍ଟି ଓ ଏହାର କ୍ରମାଗତ କୋଷର ବିଭାଜନ ଘଟି ଆଜିର ବହୁକୋଷୀ ପ୍ରାଣୀମାନେ ସୃଷ୍ଟି ହୋଇଛନ୍ତି ବୋଲି ବୈଜ୍ଞାନିକମାନେ ମତ ଦିଅନ୍ତି । ଏକକୋଷୀ ପ୍ରାଣୀ ଆମିବା ହିଁ ପୃଥିବୀ ପୃଷ୍ଠର ପ୍ରଥମ ଜୀବନ୍ତ ବସ୍ତୁ ବୋଲି ସମସ୍ତଙ୍କର ମତ । ପ୍ରାୟ ଦୁଇଶହ କୋଟି ବର୍ଷପୂର୍ବେ ଏମାନେ ପୃଥିବୀ ପୃଷ୍ଠରେ ଦେଖା ଦେଇଥିଲେ ବୋଲି ଅନୁମାନ କରାଯାଏ । ଆଜି ପର୍ଯ୍ୟନ୍ତ ମଧ୍ୟ ଏମାନେ ପୃଥିବୀ ପୃଷ୍ଠରେ ଦେଖାଯାଉଛନ୍ତି । ଏମାନଙ୍କର ଆକାର ଏତେ କ୍ଷୁଦ୍ର ଯେ ଖାଲି ଆଖିକୁ ଏମାନେ ଦେଖାଯାଆନ୍ତି ନାହିଁ । ଏହାର ଆକାର ୦ ଦଶମିକ ୨୫ରୁ ୦ ଦଶମିକ ୬୦ ମିଲି ମିଟର ଯାଏ ହୋଇଥାଏ । ଗୋଟିଏ ଆଲ୍‌ପିନ୍ କଣ୍ଟାର ମୂଳ ଯେତିକି ସ୍ଥାନରେ ରହିପାରିବ ପ୍ରାୟ ସେତିକି ବା ତାଠାରୁ କମ ଏହାର ଆକାର । ଆମିବା ରହୁଥିବା ଜଳରୁ ଗୋଟିଏ ବୁନ୍ଦା ଆଣି ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଦେଖିଲେ ଏହା ଭିତରେ ଶହ ଶହ ସଂଖ୍ୟାରେ ଆମିବା ସବୁବେଳେ ଚଳଚଞ୍ଚଳ

ଅବସ୍ଥାରେ ଥିବାର ଦେଖିବାକୁ ମିଳେ । ସବୁଠାରୁ ବଡ଼ ଆମିବାକୁ ଆମେ ଖାଲି ଆଖିରେ ଦେଖିଲେ ଏକ ଧଳା ବିନ୍ଦୁ ପରି ଦିଶେ । ଏହାର କୋଷ ଭିତରେ ଏକ ପ୍ରକାର ପତଳା ଧଳା ଜେଲି ପରି ପ୍ରୋଟୋପ୍ଲାଜମ ରହିଥାଏ ଏବଂ କୋଷ ମଧ୍ୟରେ ଏକ ନ୍ୟୁକ୍ଲିୟସ ରହି ଆମିବାକୁ ପରିଚାଳିତ କରୁଥାଏ । କୋଷର ଆକାର ସବୁବେଳେ ପରିବର୍ତ୍ତିତ ହେଉଥାଏ ।

ପୃଥିବୀର ଏହି ପ୍ରଥମ କ୍ଷୁଦ୍ର ପ୍ରାଣୀ ଖାଏ କଣ, ରୁହେ କିପରି, ଆମମାନଙ୍କ ପରି ଯିବା ଆସିବା କରିପାରେ କି ନାହିଁ, ଶ୍ୱାସକ୍ରିୟା ସମ୍ପାଦନ କିପରି କରେ, ବଂଶ ବୃଦ୍ଧି କରେ କିପରି—ଆସ ସେ ବିଷୟରେ ଆଲୋଚନା କରିବା ।



ଗୋଟିଏ ଆମିବା ପ୍ରାଣୀ

ଆମ ପୃଥିବୀ ପୃଷ୍ଠରେ ଥିବା ପ୍ରତ୍ୟେକ ପ୍ରାଣୀଙ୍କର ଖାଇବା ପାଇଁ ଗୋଟିଏ ଲେଖାଏଁ ପାଟି ଅଛି । ଖାଇବା ବ୍ୟତୀତ ଆମେ ପାଟିଦ୍ୱାରା

କଥା କହି ଆମର ମନର ଭାବନାକୁ ଅନ୍ୟ ଆଗରେ ପ୍ରକାଶ କରିଥାଉ । ପାଟି ଦ୍ୱାରା ଆମେ ଖାଦ୍ୟ ଖାଉ, ଆଖିଦ୍ୱାରା ଦେଖୁ, ନାକ ସାହାଯ୍ୟରେ ନିଶ୍ୱାସ ପ୍ରଶ୍ୱାସ ନେଉ, ହାତ ସାହାଯ୍ୟରେ କାମ କରୁ, ଗୋଡ଼ ସାହାଯ୍ୟରେ ଚାଲବୁଲ କରୁ,ଖେଳକୁଦ କରୁ । ଆମ ମାନଙ୍କର ପ୍ରତ୍ୟେକ ଅଙ୍ଗ ପ୍ରତ୍ୟଙ୍ଗ ଆମକୁ ବିଭିନ୍ନ ପ୍ରକାର କାମ କରିବାରେ ସାହାଯ୍ୟ କରିଥାଏ । ସେହିପରି ପୃଥିବୀ ପୃଷ୍ଠରେ ଥିବା ବିଭିନ୍ନ ଜୀବଜନ୍ତୁ ସେମାନଙ୍କର ଅଙ୍ଗ ପ୍ରତ୍ୟଙ୍ଗ ସାହାଯ୍ୟରେ ବିଭିନ୍ନ ପ୍ରକାର କାର୍ଯ୍ୟ ସାଧିତ କରିଥାନ୍ତି । ପୃଥିବୀ ପୃଷ୍ଠର ପ୍ରଥମ ପ୍ରାଣୀ ଆମିବା ଦେହରେ ଏହି ସବୁ କାର୍ଯ୍ୟ କରିବା ପାଇଁ ଅଙ୍ଗ ପ୍ରତ୍ୟଙ୍ଗ କିପରି ଥିଲ ତାହା ତୁମେ ଜାଣିଛ କି ?

ସବୁଠାରୁ ମଜାର କଥା ହେଉଛି ଆମିବାର ଶହ ଶହ ମୁଖ ଅଛି । ଏହି ପ୍ରାଣୀ ଏହାର ଶରୀରର ଯେ କୌଣସି ଅଂଶକୁ ଯେତେବେଳେ ମୁଖ ବୋଲି ବ୍ୟବହାର କରିବାକୁ ଇଚ୍ଛା କରେ, ତାକୁ ସେତେବେଳେ ମୁଖ ଆକାରରେ ବ୍ୟବହାର କରେ । ତେଣୁ ଏହାର କୌଣସି ସ୍ୱତନ୍ତ୍ର ମୁଖ ନାହିଁ । ଯେ କୌଣସି ଖାଦ୍ୟ ପଦାର୍ଥ ଦେଖିଲେ ଏହା ଖାଦ୍ୟ ପଦାର୍ଥର ଚାରିଆଡ଼ୁ ଘେରିଯାଏ ଏବଂ ଖାଦ୍ୟଟି ଏହାର ଦେହ ମଧ୍ୟକୁ



ଚାଲୁଥିବା ଅବସ୍ଥାରେ ଆମିବା

ପଶିଯାଏ । ଏଥିରୁ ଆବଶ୍ୟକ ଖାଦ୍ୟ ଗ୍ରହଣ କରିସାରିବା ପରେ ଅବଶିଷ୍ଟ ଅଖାଦ୍ୟ ବସ୍ତୁକୁ ଛାଡ଼ି ଦେଇ ଆମିବା ଆଗକୁ ଚାଲିଯାଏ । ଏହାର ତ ଗୋଡ଼ ହାତ ନାହିଁ, ତେବେ ଏହି କ୍ଷୁଦ୍ର ଜୀବ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଏ କପରି ? ଏହା ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବାକୁ ଇଚ୍ଛା କଲେ ଏହା ଦେହରୁ ଏକ ଅସ୍ଥାୟୀ ପାଦ ସୃଷ୍ଟି କରେ ଏବଂ ଏହି ପାଦ ଆଗକୁ ଲମ୍ବି ଯାଏ । ଏହାପରେ ଶରୀରର ଅବଶିଷ୍ଟ ଅଂଶ ସେହି ଦିଗକୁ ଲମ୍ବିଯାଇ ସମ୍ପୂର୍ଣ୍ଣ କୋଷ ବା ଶରୀର ଆଗକୁ ଆଗକୁ ଧୀରେ ଧୀରେ ଚାଲିଯାଏ (ଚିତ୍ର ଦେଖ) । ଏହାର କୋଷର ଆକୃତିରେ ସବୁବେଳେ ପରିବର୍ତ୍ତନ ଘଟୁଥାଏ । କେତେବେଳେ ଏହା ସ୍ଥିର ରହେନାହିଁ । ଏହି କ୍ଷୁଦ୍ର ପ୍ରାଣୀ ଶ୍ୱାସକ୍ରିୟା ପାଇଁ ଜଳରେ ଥିବା ଅମ୍ଳଜାନକୁ ଶୋଷିନେଇ ଶ୍ୱାସକ୍ରିୟା ସଂପାଦନ କରେ । ଏକ ସରଳ ଉପାୟରେ ନିଜର ବଂଶବୃଦ୍ଧି କରେ । ବଂଶବୃଦ୍ଧି ସମୟରେ ଏହା ଶରୀର କୋଷକୁ ଗୋଲାକାର କରିଦିଏ ଏବଂ ଦୁଇଭାଗରେ ବିଭକ୍ତ ହୋଇଯାଇ ଦୁଇଟି ଆମିବାରେ ପରିଣତ ହୁଏ । ଦୁଇରୁ ଚାରି, ଚାରିରୁ ଆଠ, ଆଠରୁ ଷୋହଳ ଏହିପରି ଆମିବାର କୋଷ ବା ଶରୀର ବିଭକ୍ତ ହୋଇ ବହୁ ଶିଶୁ ଆମିବା ସୃଷ୍ଟି ହୁଏ । ସବୁଠାରୁ ମଜାକଥା ହେଲା ଯେ ଏହା ବହୁତ ଚାଲାଖ ଚତୁର । ସବୁବେଳେ ଅତ୍ୟଧିକ ଆଲୋକିତ ଅଞ୍ଚଳ, ଗରମ ଅଞ୍ଚଳ ଓ ବିପଦପୂର୍ଣ୍ଣ ବସ୍ତୁଠାରୁ ନିଜକୁ ଦୂରେଇ ରଖେ । ଏହି ଏକ କୋଷୀ ଆମିବା ବୁଢ଼ା ହୁଏ ନାହିଁ କିମ୍ବା ଏହାର ମୃତ୍ୟୁ ମଧ୍ୟ ଘଟେ ନାହିଁ । କୌଣସି ଦୁର୍ଘଟଣାର ସମ୍ମୁଖୀନ ହେଲେ ବା ରୋଗରେ ପଡ଼ିଲେ ହିଁ ଆମିବାର ମୃତ୍ୟୁ ଘଟେ ।

ପୃଥିବୀ ପୃଷ୍ଠରେ ଆଜି ବହୁ ଜଟିଳକାୟ ବହୁ କୋଷ ବିଶିଷ୍ଟ ଚତୁର ପ୍ରାଣୀ ଦେଖାଯାଉଥିଲେ ମଧ୍ୟ ପୃଥିବୀ ପୃଷ୍ଠର ଏକ କୋଷୀ ପ୍ରଥମ ପ୍ରାଣୀ ଆମିବା ଯେ ଆଜିର ପ୍ରାଣୀଙ୍କଠାରୁ କୌଣସି ଗୁଣରେ କମ୍ ନଥିଲା ଏହା ତ ଆମେ ଉପରୋକ୍ତ ଆଲୋଚନାରୁ ଜାଣିଲେ । ଏହି ସାଧାସିଧା, ସରଳ ଏକକୋଷୀ ପ୍ରାଣୀକୁ ଦେଖିବାକୁ ତୁମ ମାନଙ୍କର

ମନ ନିଶ୍ଚୟ ଉଦ୍‌ବିଗ୍ନ ହେବଣି । ବଡ଼ ହେଲେ ତୁମେ ନିଶ୍ଚୟ ଏହି ପ୍ରାଣୀକୁ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଦେଖିପାରିବ । ନଚେତ୍ କୌଣସି ବିଜ୍ଞାନାଗାର ବା ପ୍ରାଣୀବିଜ୍ଞାନ ସଂଗ୍ରହାଳୟକୁ ଗଲେ ଏହି ପ୍ରାଣୀକୁ ମଧ୍ୟ ଦେଖିପାରିବ ।



# ଘର ଭିତରେ କଙ୍କାଳ

କଙ୍କାଳର ନାମ ଶୁଣି ପିଲଠାରୁ ବୟସ୍କ ଲୋକେ ମଧ୍ୟ ଭୟରେ ଛୁନଆଁ ହୋଇଯାଆନ୍ତି । ଭୂତ, ପ୍ରେତ, କଙ୍କାଳ—ଏହି ସବୁ ନାମ ଶୁଣି ଅଧିକାଂଶ ପିଲ ଡରନ୍ତି, ମାତ୍ର ଭୂତ ଗପ ଶୁଣିବାକୁ ପିଲମାନଙ୍କୁ ଭାରି ଭଲ ଲଗେ । କାଳ୍ପନିକ ଭୂତମାନେ କପରି ଚେଙ୍କା ମାରନ୍ତି, ରାତି ଅଧରେ ମଶାଣିରେ ଆଲୁଅଜାଳି ନାଚନ୍ତି, ଏସବୁ ଗପ ଶୁଣି ପିଲମାନେ ଡରି ଛୁନଆଁ ହୋଇ ଗପ କହୁଥିବା ଅଜା, ଆଈଙ୍କୁ ଜାବୁଡ଼ି ଧରନ୍ତି । କଙ୍କାଳ ବା କୌଣସି ଜୀବଜନ୍ତୁଙ୍କ ହାଡ଼ ପିଲମାନେ ତୁମେ କେବେ ଦେଖିଛ କି ? ଆମ ମଣିଷ ଦେହରେ ୨୦୬ ଖଣ୍ଡି ଛୋଟ ବଡ଼ ହାଡ଼ ଯୋଡ଼ା ହୋଇ ମଣିଷର କଙ୍କାଳ ତିଆରି ହୋଇଛି । ସେହିପରି ସବୁ ପ୍ରାଣୀଙ୍କର କଙ୍କାଳ ମଧ୍ୟ ତିଆରି ହୋଇଛି । ଏହି ହାଡ଼ସବୁ ଶକ୍ତ ଭାବରେ ଲଗି ରହି ଆମର ଦେହକୁ ଶକ୍ତ ଭାବରେ ଧରି ରଖିବା ଫଳରେ ଆମେ ଚାଲିପାରୁଛୁ । ଯାହା ଇଚ୍ଛା ତାହା କରିପାରୁଛୁ । ଏଥିରୁ ଖଣ୍ଡେ ହାଡ଼ ନଥିଲେ ହୁଏତ ଆମ ଶରୀରର କୌଣସି ଗୋଟିଏ ଅଙ୍ଗ ଅଚଳ ହୋଇ ଅକାମୀ ହୋଇ ଯାଇଥାଆନ୍ତା । ଶରୀରରୁ ମାଂସ ବାହାରି ଗଲ ପରେ ହାଡ଼ର ସମଷ୍ଟି ଥିବା ଯେ କୌଣସି ପ୍ରାଣୀର ଶରୀରକୁ ଆମେ କଙ୍କାଳ କହିବା । ଅଧିକାଂଶ ବଜ୍ଞାନାଗାରରେ ମଣିଷ, ବେଙ୍ଗ, ମାଛ, ପାରି, ସାପ ଓ ବହୁ ପ୍ରାଣୀଙ୍କର କଙ୍କାଳ ରହିଛି । ଏହି ସବୁ କଙ୍କାଳକୁ ଦେଖି ଡରିବାର ବା ଭୟ କରିବାର କିଛିନାହିଁ । ତୁମ୍ଭେମାନେ ଅଧିକା ପାଠ ପଢ଼ିଲେ ଏହି କଙ୍କାଳ ବିଷୟରେ ବିସ୍ତୃତ ପଢ଼ିବ ଓ ଭୂତ, ପ୍ରେତ, ଏସବୁ ଯେ କିଛି ନାହାଁନ୍ତି ତାହା ସହଜରେ ଜାଣିପାରିବ । ମାତ୍ର ଏବେ ତ ତୁମେ ମାନେ ସବୁ କଙ୍କାଳ କଥା ଶୁଣି, ଭୂତ ପ୍ରେତଙ୍କୁ

ଉଠୁଛ ? ମାତ୍ର ତୁମ ଘରେ, ତୁମ ପାଖରେ, ତୁମ ସାଙ୍ଗରେ ଯେ ଗୋଟିଏ କଙ୍କାଳ ସବୁବେଳେ ରହୁଛି ଏବଂ ଯିବା ଆସିବା କରୁଛି ଏହା ତୁମେ ବୋଧହୁଏ ଜାଣିନାହଁ । ତୁମ ଅଜାଣତରେ ସେ ତୁମ ସହିତ ବୁଲୁଛି, ଏହା ଜାଣିଲେ କଣ ତୁମକୁ ଡର ମାଡ଼ିବ ? ଆସ ତୁମ ସହିତ ଯିବା ଆସିବା କରୁଥିବା ସେହି କଙ୍କାଳ ବିଷୟରେ ଅଳ୍ପ ଆଲୋଚନା କରିବା ।

ତୁମେ ମାନେ ସମସ୍ତେ ପ୍ରାୟ ଚପଲ ପିନ୍ଧୁଥିବ । ଗାଧୁଆ ଘର, ପାଇଖାନାକୁ ଗଲାବେଳେ, ବଗିଚାରେ ବୁଲିବା ବେଳେ ତୁମ ଗୋଡ଼ରେ ସ୍ପଞ୍ଜର ଏକ ଚପଲ ପ୍ରାୟ ଥାଏ । ମାତ୍ର ଏହି ସ୍ପଞ୍ଜ ଯେ ଏକ ପ୍ରାଣୀର କଙ୍କାଳ ତାହା ତୁମେ ବୋଧହୁଏ ଜାଣି ନାହଁ । ଏହା ଏକ କଙ୍କାଳ ବୋଲି ଜାଣିବା ପରେ ତୁମକୁ ଆଉ କଙ୍କାଳ କଥା ଭାବିଲେ ଭୟ ଲାଗୁଛି କି ? ତୁମେ ପିନ୍ଧୁଥିବା ଏହି ସ୍ପଞ୍ଜର କଙ୍କାଳ ଖୁବ୍ ନରମ ଏବଂ ପାଣି ଶୋଷି ନିଏ । ଶୋଷିଥିବା ପାଣି ଏହା ଉପରେ ଚାପ ପଡ଼ିଲେ ଆପେ ଆପେ ବାହାରି ଯାଏ । ଏହା ଆମକୁ ଅନେକ କାର୍ଯ୍ୟରେ ସାହାଯ୍ୟ କରେ । ଆସ ଏହି ପ୍ରାଣୀ ବିଷୟରେ ଆମେ ଅଧିକ କିଛି ଆଲୋଚନା କରିବା ।



ଏହି ସ୍ପଞ୍ଜ ପ୍ରାଣୀ ସମୁଦ୍ର ଶଯ୍ୟାରେ ପ୍ରାୟ ଲାଗି ରହିଥାଏ ଏବଂ ବଡ଼ ବୁଦାପରି ବଢ଼ିଥାଏ । ବିଭିନ୍ନ ଅଞ୍ଚଳର ସମୁଦ୍ରରେ ଏହା ବିଭିନ୍ନ

ରଙ୍ଗ ବେରଙ୍ଗର ମଧ୍ୟ ହୋଇଥାଏ । ବହୁ ବର୍ଷ ଯାଏ ସ୍ପଞ୍ଜକୁ ଏକ ଉଦ୍ଭିଦ ବୋଲି ଲୋକମାନେ ଭାବୁଥିଲେ କାରଣ ଏହା ଉଦ୍ଭିଦ ପରି ଦେଖାଯାଏ ଏବଂ କେତେକ ଜଳଜ ଉଦ୍ଭିଦ ପରି ସମୁଦ୍ର ଶଯ୍ୟାରେ ବଢ଼ିଥାଏ । ଏହାପରେ କେତେକ ଏହାକୁ ଉଦ୍ଭିଦ ଓ ପ୍ରାଣୀର ଏକ ମଧ୍ୟସ୍ଥ ଜୀବ ଭାବେ ଗଣନା କଲେ; କାରଣ ପ୍ରାଣୀ ଓ ଉଦ୍ଭିଦ ଉଭୟଙ୍କର କେତେକ ଗୁଣ ସ୍ପଞ୍ଜଠାରେ ଦେଖାଯାଏ । ମାତ୍ର ସ୍ପଞ୍ଜର ଶ୍ୱାସକ୍ରିୟା ପ୍ରଣାଳୀ ଓ ଖାଦ୍ୟ ସଂଗ୍ରହ ଦେଖି ବୈଜ୍ଞାନିକମାନେ ଏହା ଏକ ପ୍ରାଣୀ ବୋଲି ଶେଷରେ ଉପନୀତ ହେଲେ ।

ଆମେ ଚିହ୍ନିଥିବା ସ୍ପଞ୍ଜର କଙ୍କାଳ ହିଁ ଏହାର ଶରୀରର ମୁଖ୍ୟ ଅଂଶ । ଏହି କଙ୍କାଳର ଗୃହଅଡ଼େ ସଜନା ଗଛର ଅଠା ପରି ଏକ ପ୍ରକାର ଅଠାଳିଆ ପଦାର୍ଥ ଘେରି ରହି ସ୍ପଞ୍ଜର ଶରୀର ସୃଷ୍ଟି ହୋଇଥାଏ । ଏହି ଅଠାଳିଆ ପଦାର୍ଥ ବଳରେ ସମୁଦ୍ର ଜଳ ମଧ୍ୟରୁ ପାଣି, ପବନ ସହିତ ଛୋଟ ଛୋଟ କୀଟ, ମାଛ ଓ ଜଳଜ ଉଦ୍ଭିଦ ଓ ଛୋଟ ପ୍ରାଣୀଙ୍କୁ ସ୍ପଞ୍ଜର ଶରୀର ମଧ୍ୟକୁ ଠେଲି ପ୍ରବେଶ କରାଏ ଏବଂ ସ୍ପଞ୍ଜ ଶରୀରରେ ଥିବା ଟ୍ୟୁବ ବା ନଳୀ ମଧ୍ୟରେ ଥିବା ସରୁ ବାଳପରି ପଦାର୍ଥ ଏହି ସବୁ ପ୍ରାଣି ଓ ଜୀବଜନ୍ତୁଙ୍କୁ ଶରୀର ମଧ୍ୟକୁ ଠେଲି ନିଏ ଏବଂ ଏହା ସ୍ପଞ୍ଜର ଖାଦ୍ୟ ରୂପେ ବ୍ୟବହୃତ ହୋଇ ହଜମ ହେବା ପରେ ଶେଷରେ ଶରୀର ମଧ୍ୟରୁ ଅଦରକାରୀ ପଦାର୍ଥକୁ ବାହାରକୁ ବାହାର ଆସିବାରେ ସାହାଯ୍ୟ କରେ । ସ୍ପଞ୍ଜ ସାଧାରଣତଃ ସମୁଦ୍ରର ଲୁଣି ପାଣିରେ ଦେଖାଯାଏ । କେତେକ ଶ୍ରେଣୀର ସ୍ପଞ୍ଜ ମଧୁର ପାଣିରେ ଓ ହ୍ରଦରେ ମଧ୍ୟ ଦେଖାଯାଆନ୍ତି । ଛୋଟରୁ ବଡ଼ ବହୁ ପ୍ରକାରର ବିଭିନ୍ନ ରଙ୍ଗର ଭିନ୍ନ ଭିନ୍ନ ଆକାରର ସ୍ପଞ୍ଜ ଦେଖାଯାଏ । କେତେକ ସ୍ପଞ୍ଜ ପ୍ରାୟ ୫।୬ ଫୁଟ ଯାଏ ବଡ଼ ହୋଇ ବିଭିନ୍ନ ପ୍ରକାରର ଆକାର ଧାରଣ କରିଥାଆନ୍ତି । ମଣିଷ ଆଙ୍ଗୁଠି ଆକାରର ୬ ଇଞ୍ଚ ଲମ୍ବର ଆକୃତି ବିଶିଷ୍ଟ ଏକ ପ୍ରକାର ସ୍ପଞ୍ଜକୁ ଆଙ୍ଗୁଠି ସ୍ପଞ୍ଜ ବୋଲି କୁହାଯାଏ । ଆମେ ବ୍ୟବହାର କରୁଥିବା ସ୍ପଞ୍ଜ ସାଧାରଣତଃ ଭୂମଧ୍ୟସାଗର, ଆମେରିକାର ଉପକୂଳ, ବାହାମ ସାଗର ଓ କେତେକ ଉପସାଗର ଅଞ୍ଚଳରେ ଦେଖାଯାଏ । ସ୍ପଞ୍ଜକୁ

ସମୁଦ୍ର ବା ନଦୀ ଗର୍ଭରୁ ଅଣାଯିବା ପରେ ଏଥିରୁ ଅଠାଳିଆ ପଦାର୍ଥ ଶୁଖିବା ଯାଏ ଖରାରେ ଟାଙ୍ଗି ରଖାଯାଏ । ଏହାପରେ ଏହାକୁ ସଫା କରାଯାଏ ଓ ପରେ ପୁଣି ଶୁଖାଯାଏ ।

ସ୍ପଞ୍ଜ ଅଣ୍ଡା ଦେଇ ବଂଶବୃଦ୍ଧି କରେ । ଅଣ୍ଡାରୁ ଛୁଆ ହେବା-ପରେ ଏହା ସମୁଦ୍ର ପାଣିରେ ଘୂରିବୁଲେ । କୌଣସି କଠିନ ଶଯ୍ୟା ବା ସମୁଦ୍ର ଶଯ୍ୟାରେ ଲାଗିଲେ ଏହା ସେଥିରେ ଦୃଢ଼ଭାବରେ ଲାଗିରହି ବଢ଼ିବାରେ ଲାଗେ । ଏହା ବ୍ୟତୀତ ସ୍ପଞ୍ଜ ଅନ୍ୟ ଏକ ଉପାୟରେ ମଧ୍ୟ ବଂଶବୃଦ୍ଧି କରେ । ମାଈ ସ୍ପଞ୍ଜ ନିଜ ଦେହରେ ଛୋଟ ଛୋଟ କଢ଼ ପରି ଆକୃତିର ଅଙ୍ଗ ସୃଷ୍ଟି କରେ । ଏମାନେ ପରେ ମାଈ ସ୍ପଞ୍ଜ ଦେହରୁ ଛାଡ଼ିଯାଇ ନୂତନ ସ୍ପଞ୍ଜ ହୁଅନ୍ତି । ସାମୁଦ୍ରିକ ଜୀବମାନେ ସାଧାରଣତଃ ସ୍ପଞ୍ଜକୁ ଖାଆନ୍ତି ନାହିଁ । କାରଣ ଏହା ଦେହରୁ ଏକ ପ୍ରକାର ଦୁର୍ଗନ୍ଧ ବାହାରେ ।

ଏବେ କ୍ରମେ ସ୍ପଞ୍ଜ ମାନଙ୍କର ସଂଖ୍ୟା ଲୋପ ପାଇବାରେ ଲାଗିଛି । ଦୁଇପ୍ରକାର ଉପାୟରେ ବଂଶବୃଦ୍ଧି କରିମଧ୍ୟ ସ୍ପଞ୍ଜ ଆଉ ବେଶୀ ସଂଖ୍ୟାରେ ସମୁଦ୍ରରେ ଦେଖାଯାଉ ନାହାଁନ୍ତି । ଏମାନଙ୍କ ସଂଖ୍ୟା କମିବାର ସଠିକ କାରଣ ଜଣାଯାଇ ନାହିଁ । ମାତ୍ର ଏକ ରୋଗଦ୍ୱାରା ବହୁ ପରିମାଣରେ ସ୍ପଞ୍ଜ ମରିଯାଉଥିବାର ଦେଖାଯାଉଛି । ଏହା ବ୍ୟତୀତ ଗୋଟିଏ ସ୍ଥାନରେ ବହୁ ସ୍ପଞ୍ଜ ରହୁଥିବାରୁ ସମସ୍ତେ ଠିକ୍ ଭାବରେ ବଢ଼ିପାରୁ ନାହାନ୍ତି । ତେଣୁ କ୍ରମେ ସ୍ପଞ୍ଜ ପରିବର୍ତ୍ତେ ଆମେ ବିଭିନ୍ନ ପ୍ରକାର କୃତ୍ରିମ ପଦାର୍ଥ ତିଆରି କରି ବ୍ୟବହାର କରୁଛୁ । ଏହାର ବଂଶରକ୍ଷା ଓ ଉନ୍ନତି ପାଇଁ ପୃଥିବୀର କେତେକ ସ୍ଥାନରେ ସ୍ପଞ୍ଜ ଉପରେ ଗବେଷଣା ମଧ୍ୟ ହେଉଛି । ତୁମ୍ଭେମାନେ ତ ତୁମ ଘର ଭିତରେ ଥିବା ଏକ କଙ୍କାଳ ବିଷୟରେ ଜାଣିଲ । ତେଣୁ କଙ୍କାଳ ନାଁ ଶୁଣି ଏବେ ଆଉ ଡରିବ ନାହିଁ ଟି ?



# ଗଛର ବୟସ କେତେ ?

ତୁମକୁ ଯଦି ପଚରାଯାଏ ତୁମର ବୟସ କେତେ, ତୁମ ସାଙ୍ଗ ମିନ୍ଟୁର ବୟସ କେତେ ? ତେବେ ତୁମେ ତୁରନ୍ତ ସଙ୍ଗେ ସଙ୍ଗେ କହିଦେଇ ପାରିବ । ତୁମ ବଗିଚାରେ ଉଠିଥିବା ଫୁଲ ଓ ଫଳଗଛର ବୟସ ମଧ୍ୟ ତୁମେ କହିଦେଇ ପାରିବ । କାରଣ ଫୁଲଗଛ ବା ଫଳଗଛକୁ ତୁମେ ନିଜ ହାତରେ ତୁରନ୍ତ ୨।୩ ମାସ ପୂର୍ବରୁ ଲଗାଇ ଥିବ । କିନ୍ତୁ ତୁମକୁ ଯଦି ଗାଁ ମୁଣ୍ଡର ନଦୀକୂଳରେ ଥିବା ବିରାଟ ବରଗଛ, ଆମ୍ବଗଛ ବୟସ ପଚରାଯାଏ ତେବେ ତୁମେ ତାହାର ବୟସ କେତେ କହିପାରିବ କି ? ଦୁର୍ଗାପୂଜା ଛୁଟିରେ ଥରେ ବାପା ବୋଉଙ୍କ ସହିତ ମିନ୍ଟୁ ଗାଁକୁ ବୁଲି ଯାଇଥିବା ବେଳେ ତାଙ୍କ ଅଜାଙ୍କଠାରୁ ଶୁଣିଥିଲା, ଗାଁ ମୁଣ୍ଡରେ ଥିବା ବିରାଟ ବରଗଛକୁ ତାଙ୍କର ଅଜାଙ୍କ ଅଜା ପିଲାବେଳୁ ଦେଖିଥିଲେ । ଏହାର ବୟସ କେତେ ବର୍ଷ ହେବ ବୋଲି ମିନ୍ଟୁ ଅଜାଙ୍କୁ ପ୍ରଶ୍ନ କରିବାରୁ ଅଜା କହିଥିଲେ, "ଏହାର ବୟସ କିଏ କହିବ, ଅନୁମାନ ୨।୩ ଶହ ବର୍ଷ ହୋଇପାରେ । ମାତ୍ର ପିଲାମାନେ ଆଜିକାର ବିଜ୍ଞାନ ଯୁଗରେ ତୁମମାନଙ୍କର ବୟସ ତୁମ୍ଭେମାନେ ସହଜରେ ଜାଣିପାରୁଥିବା ଭଳି ପ୍ରତ୍ୟେକ ଗଛର ବୟସ ମଧ୍ୟ ତୁମ୍ଭେମାନେ ସହଜରେ ଜାଣିପାରିବ । ଉଦ୍ଭିଦବିତ୍‌ମାନେ ଗଛର ବୟସ ଜାଣିବାପାଇଁ କେତେକ ସହଜ ଉପାୟ ବାହାର କରିଛନ୍ତି । ଏହି ଉପାୟ ଦ୍ୱାରା ତୁମ୍ଭେମାନେ ଗଛର ବୟସ ଜାଣିବା ସଙ୍ଗେ ସଙ୍ଗେ ଗଛ ତାର ଜୀବନକାଳ ମଧ୍ୟରେ କଣ କଣ କରିଛି, କେଉଁପ୍ରକାର ଅବସ୍ଥା ଦେଇ ଗତି କରି ଆସିଛି ତାହା ମଧ୍ୟ ଜାଣି ପାରିବ । ଗଛର ବୟସ କପରି ଜାଣିବ ଆସ ସେ ବିଷୟରେ ଆଲୋଚନା କରିବା ।

ତୁମ୍ଭେମାନେ ଦେଖିଥିବ ପ୍ରତ୍ୟେକ ଗଛ ଧୀରେ ଧୀରେ କିଛି କିଛି ବଢ଼େ । ଏବର୍ଷ ତୁମେ ଦେଖିଥିବା ଦୁଇଫୁଟ ଗୋଲେଇ କାଣ୍ଡ ବିଶିଷ୍ଟ

ଗଛ ଆସନ୍ତା ବର୍ଷକୁ ତିନ ଫୁଟ ଗୋଲେଇ ବିଶିଷ୍ଟ ଓ ଉଚ୍ଚ ହୋଇ-ଥାଏ । ଗଛ ମୋଟା ହୋଇ ବଢ଼େ କିପରି ଏହା ତୁମେ ଜାଣିଛ କି ? ପ୍ରତ୍ୟେକ ବନ ଗଛର ଗଣ୍ଡି ତଥା ପ୍ରତ୍ୟେକ ଅଙ୍ଗରେ ନୂଆ ନୂଆ କୋଷସ୍ତର ମିଶନ୍ତି ଏବଂ କ୍ରମେ ଗଛକୁ ମୋଟା ହେବାରେ ସାହାଯ୍ୟ କରିଥାନ୍ତି । ଏହି କୋଷ ଗୁଡ଼ିକ ଗଛର ବକଳ ତଳେ ସବୁବେଳେ ବଢ଼ିବାରେ ଲାଗିଥାନ୍ତି । "କ୍ୟାମ୍ବିୟମ ସ୍ତର" ନାମକ ଏକ ପ୍ରକାର କୋଷସ୍ତର ଗଛ ମଧ୍ୟରେ ସବୁବେଳେ ଅତି ଦ୍ରୁତ ଗତିରେ ବିଭାଜିତ ହୋଇ ବଢ଼ି ନୂତନ କୋଷ ସୃଷ୍ଟି କରି ଗଛକୁ ମୋଟା ଓ ଡେଙ୍ଗା କରିଥାନ୍ତି । ବସନ୍ତ ଋତୁ ସମୟରେ ଗଛର ସୃଷ୍ଟି ହୋଇଥିବା କୋଷ ଅନ୍ୟ ଋତୁରେ ସୃଷ୍ଟି ହୋଇଥିବା କୋଷଠାରୁ ସମ୍ପୂର୍ଣ୍ଣ ଭିନ୍ନ ହୋଇ-ଥାଏ । ଏହି ଋତୁରେ ସାଧାରଣତଃ ଖୁବ୍ ଜୋରରେ କୋଷ ତିଆରି ପ୍ରକ୍ରିୟା ଗଛରେ ଚାଲିଥାଏ । ଏହି ସମୟରେ ତିଆରି ହେଉଥିବା କୋଷ ଗୁଡ଼ିକ ସାଧାରଣତଃ ବଡ । ଏହି ପ୍ରକାର କୋଷ ଗୁଡ଼ିକ ସହଜରେ ଜାଣିହୁଏ । ଏହିପରି ତିଆରି ହେଉଥିବା କୋଷସ୍ତର ଗଛରେ ଏକ ବୃତ୍ତାକାର କୁଣ୍ଡଳ ସୃଷ୍ଟି କରି ରହିଥାନ୍ତି । ପ୍ରାୟ ପ୍ରତିବର୍ଷ ଗୋଟିଏ ଗୋଟିଏ ଗୋଲାକାର ବୃତ୍ତାକାର କୁଣ୍ଡଳ ସୃଷ୍ଟି ହୋଇଥାଏ । ତେଣୁ



ଗଛ କଟା ଗଣ୍ଡିପରେ ତୁମେମାନେ ଏହି କୁଣ୍ଡଳାକାର କୋଷସ୍ତରକୁ

ଗଣନା କରି ସହଜରେ ଗଛର ବୟସ କେତେ କହିଦେଇ-ପାରିବ । ଗଛକୁ ନକାଟି ଏହାର ଡାଳକୁ ଦେଖି ସେଥିରୁ ଗଣନା କରିଯାଇ ଏହାର ବୟସ କେତେ ମଧ୍ୟ କୁହାଯାଇ ପାରିବ ।

## ଗଛ ବି ଡାଏରୀ ଲେଖେ

ତୁମ ମାନଙ୍କ ମଧ୍ୟରୁ ଅଧିକାଂଶ ଡାଏରି ଲେଖିବାକୁ ଭଲପାଅ । ନୂଆବର୍ଷ ଆସିଗଲେ ନୂଆ ଡାଏରିଟିଏ ପାଇଁ ବାପା, ମା'ଙ୍କ ନିକଟରେ ଅଳି କର । ଏହି ଡାଏରିରେ ତୁମ୍ଭେମାନେ ପ୍ରତିଦିନ କ'ଣ କ'ଣ କାମ କଲ ତାହା ଲେଖି ରଖ । ଏହି ଡାଏରି ଦେଖି ତୁମେ କି କି ଭଲ କାମ କରିଛ ସହଜରେ ଜଣାପଡ଼େ । ମାତ୍ର ତୁମ୍ଭେମାନେ ଶୁଣିଲେ ଆଶ୍ଚର୍ଯ୍ୟ ହେବ ଯେ ତୁମର ଘରଆଡ଼େ, ଏହି ପୃଥିବୀ ପୃଷ୍ଠରେ ଥିବା ସବୁଜ ବୃକ୍ଷଲତା ମଧ୍ୟ ସେମାନଙ୍କ ଡାଏରି ନିଜେ ଲେଖନ୍ତି । ତୁମ୍ଭମାନଙ୍କ ପରି ସେମାନଙ୍କର ଡାଏରି ଲେଖିବା ପାଇଁ କାଗଜ କଲମ ଦରକାର ହୁଏ ନାହିଁ । ତେବେ ବର୍ତ୍ତମାନ ପ୍ରଶ୍ନ ହେଉଛି ସେମାନେ ଡାଏରି ଲେଖନ୍ତି କିପରି ଏବଂ ଡାଏରିରେ କଣ ଲେଖନ୍ତି । ଆମେ ଯଦି କେତୋଟି ସାଧାରଣ କଥା ଜାଣିଥିବା ତେବେ ଗଛ ତାର ଜୀବନକାଳରେ ତା'ର ଡାଏରିରେ କ'ଣ ସବୁ ଲେଖିଛି ତାକୁ ବୁଝିବାକୁ ବିଶେଷ କଷ୍ଟ ହେବ ନାହିଁ । ଏହି ଡାଏରିରୁ ଆମେ ଗଛ ପ୍ରତିମାସରେ କେତେ ବଢ଼ୁଛି, ଗଛର ବୟସ ଏବଂ ଏହାର ଜୀବନକାଳ ମଧ୍ୟରେ ଏହା କି ପ୍ରକାର ପ୍ରାକୃତିକ ବିପତ୍ତି ମଧ୍ୟଦେଇ ଗତି କରି ଆସିଛି ଇତ୍ୟାଦି ବିଷୟରେ ବହୁ କଥା ଜାଣି ପାରିବା । ଗଛ ଦେହରେ ଥିବା ବୃତ୍ତାକାର କୋଷସ୍ତରକୁ ଦେଖି ଆମେ ଜାଣିପାରିବା କେବେ ମରୁଡ଼ି ବା ଅନାବୃଷ୍ଟି ଗଛ ବଢ଼ି-ଥିବା ଅଞ୍ଚଳରେ ଦେଖାଦେଇଥିଲା, କାରଣ ଯେତେବେଳେ ଅତ୍ୟଧିକ ବର୍ଷା, ବନ୍ୟା ହୋଇଥାଏ ଗଛ ଦ୍ରୁତ ଗତିରେ ବଢ଼ିଥାଏ ଏବଂ ଏହି ସମୟରେ ପ୍ରାୟ ଗଛ ଦେହରେ ମୋଟା କୋଷସ୍ତର ସୃଷ୍ଟି ହୋଇଥାଏ । ମାତ୍ର ମରୁଡ଼ି ଓ ଅଳ୍ପ ବୃଷ୍ଟିପାତ ସମୟରେ ଗଛ ଅତି ଧୀରେ ଧୀରେ ବଢ଼ିଥାଏ ଏବଂ ଏହାର କୋଷସ୍ତର ପତଳା ହୋଇ ସୃଷ୍ଟି ହୋଇଥାଏ । ଏହି କୋଷସ୍ତରକୁ ଦେଖି ଆମେ ଗଛର ଜୀବନକାଳ ଭିତରେ ଏହା

ଅତିକ୍ରମ କରି ଆସିଥିବା ପ୍ରାକୃତିକ ଅବସ୍ଥା ବିଷୟରେ ସହଜରେ ଜାଣି ପାରିବା ।



ଏହା ବ୍ୟତୀତ ତୁମ୍ଭେମାନେ ଦେଖିଥିବ ଯେ ଶୀତଦିନେ କେତେକ ଗଛର ଡାଳର ଅଗ୍ରଭାଗରେ (ଚିତ୍ର ଦେଖ) କଢ଼ ସବୁ ହୋଇଥାଏ । ବସନ୍ତ ଋତୁ ଆରମ୍ଭରେ ଏହି କଢ଼ରୁ ଫୁଲ ଫୁଟି ନୂଆ ପତ୍ରମାନ ସୃଷ୍ଟି ହୁଏ, ଏବଂ ପୂର୍ବରୁ କଢ଼କୁ ଘୋଡ଼ାଇ ରଖିଥିବା କାଣ୍ଡ ପରି ଗୋଟିପା ତଳକୁ ଖସିପଡ଼େ ଏବଂ ଖସିପଡ଼ିବା ସ୍ଥାନରେ ଏକ ମୁଦି ପରି ଚିହ୍ନ ଛାଡ଼ି ଯାଏ । ସୃଷ୍ଟି ହୋଇଥିବା ଡାଳର ଅଗ୍ରଭାଗରେ ପୁଣି ନୂତନ କଢ଼ ସୃଷ୍ଟି ହୁଏ । ଏହି ପ୍ରକ୍ରିୟା ପ୍ରାୟ ସବୁବେଳେ ବୃକ୍ଷଗୁଡ଼ିକ ଗଛକୁ ବଢ଼ିବାରେ ସାହାଯ୍ୟ କରିଥାଏ । ଆମ୍ଭେ ଯଦି ମୁଦିପରି ଥିବା ଚିହ୍ନଠାରୁ ଗଛର ଅଗ୍ରଭାଗ (କଢ଼ଯାଏ) ଯାଏ ମାପିବା ତେବେ ଗ୍ରୀଷ୍ମ ଋତୁରେ ଏହା କେତେ ଲମ୍ବ ବଢ଼ିଲା ତାହା ଜାଣିପାରିବା । ତେଣୁ ଗଛ ନିଜେ ଏକ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ କେତେ ବଢ଼ୁଛି ତାହା ନିଜ ଦେହରେ ଚିହ୍ନ ସୃଷ୍ଟି କରି ଲେଖିରଖିଛି । ଏହାକୁ ଆମେ ଗଛର ଡାଏରୀ ଲେଖା ବୋଲି କାହିଁକି ନ କହିବା !

ତେଣୁ ଗଛ ତା ନିଜ ଦେହକୁ ଦେଖାଇ ସେଥିରେ ଲେଖାଥିବା ପ୍ରାକୃତିକ ଅବସ୍ଥା, ବୟସ, ନିର୍ଦ୍ଦିଷ୍ଟ ସମୟରେ ବୃଦ୍ଧି ବିଷୟରେ ଆମେ ଜାଣିପାରିବା । ତେଣୁ ଗଛ ତା ନିଜ ଦେହରେ କିପରି କଣ କଣ କରିଛି, କିପରି ଡାଏରୀ ଆକାରରେ ଲେଖି ରଖିଛି ତାହା ତ ତୁମେ ଜାଣିଲ ।

# କଥା କହୁଥିବା ପଥର

ତୁମମାନଙ୍କୁ ଯଦି ପଚରାଯାଏ ଯେ ତୁମେ ବାସକରୁଥିବା ପୃଥିବୀ କେଉଁ ପଦାର୍ଥରେ ତିଆରି ? ଏହାର ମୂଳ ଉପାଦାନ କଣ ? ତୁମେମାନେ ବୋଧହୁଏ ଜାଣିଥିବ ଆମ ପୃଥିବୀ ମାଟି, ଗୋଡ଼, ପଥର, ପାଣିରେ ତିଆରି ହୋଇଛି, ମାତ୍ର ପୃଥିବୀର ଆଭ୍ୟନ୍ତରୀଣ ଅଂଶ ସମ୍ପୂର୍ଣ୍ଣରୂପେ ଶିଳା ବା ପଥରରେ ତିଆରି ଏବଂ ଏହା ଆଜିଯାଏ ମଧ୍ୟ ଉତପ୍ତ ଅବସ୍ଥାରେ ରହିଛି । ପୃଥିବୀ ପୃଷ୍ଠର ଉପରଭାଗ ମାଟି, ବାଲିରେ ତିଆରି ହୋଇଛି । ପୃଥିବୀ ପୃଷ୍ଠରେ ତୁମେ ଦେଖୁଥିବା ଯେ କୌଣସି ଓଜନ ଥିବା ଜିନିଷକୁ ପଦାର୍ଥ କୁହାଯାଏ । ଧରିଯାଉ ଖଣ୍ଡେ ବହି, ଗୋଟିଏ ଢେଲା, ଦୁଇଖଣ୍ଡ ପଥର ଇତ୍ୟାଦି । ଆମ ପୃଥିବୀର ପ୍ରତ୍ୟେକ ପଦାର୍ଥ ଗୋଟିଏ ବା କେତେକ ମୌଳିକ ବା ଯୌଗିକ ପଦାର୍ଥର ସମାହାରରେ ତିଆରି ହୋଇଛି । ପ୍ରତ୍ୟେକ ପଦାର୍ଥ କେତେଗୁଡ଼ିଏ କ୍ଷୁଦ୍ର କଣିକାଦ୍ୱାରା ଗଠିତ । ଏଗୁଡ଼ିକ ଏତେ ଛୋଟ ଯେ ଖାଲି ଆଖିରେ ଏହାକୁ ଦେଖିବା ସମ୍ଭବ ନୁହେଁ । ଏଗୁଡ଼ିକୁ କୁହାଯାଏ ପରମାଣୁ । କେତେକ ପରମାଣୁ ଏକତ୍ର ଭାବରେ ରହିଲେ ଆମେ ତାକୁ ଅଣୁ କହୁ । ଯେଉଁ ବସ୍ତୁର ଅଣୁଗୁଡ଼ିକ କେବଳ ଗୋଟିଏ ପ୍ରକାର ପରମାଣୁ ଦ୍ୱାରା ଗଠିତ ହୋଇଥାଏ ଆମେ ସେ ବସ୍ତୁକୁ ମୌଳିକ ପଦାର୍ଥ କହିଥାଉ । ମାତ୍ର ଯେଉଁ ବସ୍ତୁର ଅଣୁଗୁଡ଼ିକରେ ଏକାଧିକ ପରମାଣୁ ଥାଇ ଏହା ଗଠିତ ହୋଇଥାଏ ଏହାକୁ ଯୌଗିକ ପଦାର୍ଥ କୁହାଯାଏ । ଆମ ପୃଥିବୀ ପୃଷ୍ଠରେ ବର୍ତ୍ତମାନ ୧୦୭ଟି ପରମାଣୁ ଜଣାଥିବାରୁ ୧୦୬ଟି ମୌଳିକ ପଦାର୍ଥ ଅଛି । ଏହି ମୌଳିକ ପଦାର୍ଥ ଗୁଡ଼ିକକୁ ନେଇ ବିଶ୍ୱ ଅମ୍ବର ଗଠିତ ହୋଇଛି । ଆମେ ପିଉଥିବା ପାଣି, ଆମେ ଚାଲୁଥିବା ପୃଥିବୀର ମାଟି, ଆମେ ନିଶ୍ୱାସ ନେଉଥିବା ପବନ ସବୁ କୌଣସି ନା କୌଣସି ମୌଳିକ ବା ଯୌଗିକ ପଦାର୍ଥ ।

ଅମ୍ଳଜାନ, ତମ୍ବା, ଲୁହା, ସୁନା, ରୂପା, ପାରଦ ପ୍ରଭୃତି ମୌଳିକ ପଦାର୍ଥର ଉଦାହରଣ । ଏହି ସବୁ ପଦାର୍ଥର ମିଶ୍ରଣରେ ଆମ ପୃଥିବୀ ପୃଷ୍ଠ ତିଆରି ହୋଇଛି । ବହୁ ମୌଳିକ ପଦାର୍ଥର ମିଶ୍ରଣରେ ଆମ ଗ୍ରହ-ପାଖରେ ଥିବା ବାୟୁମଣ୍ଡଳ ସୃଷ୍ଟି ହୋଇଛି । ଆମ ବାୟୁମଣ୍ଡଳ ଅମ୍ଳଜାନ, ଆରଗନ, ଜଳୀୟ ବାଷ୍ପ, ଅଙ୍ଗାରକାମ୍ଳ, ଯବକ୍ଷାରଜାନ ପ୍ରଭୃତି କେତେକ ଗ୍ୟାସୀୟ ପଦାର୍ଥର ସମଷ୍ଟିରେ ଗଠିତ ହୋଇଛି । ସେହିପରି ସମୁଦ୍ର ପାଣିରେ ଲବଣ, ଆୟୋଡ଼ିନ, ଖଣିଜପଦାର୍ଥ ପ୍ରଭୃତି ମିଶି ରହିଛି ।



ପଥର ଉପରେ ଏକ ଗଛର ଫସିଲ୍

ଆମ ପୃଥିବୀର ବୟସ ପ୍ରାୟ ପାଞ୍ଚଶହ କୋଟି ବର୍ଷ ହେଲାଣି । ଜନ୍ମ ବେଳେ ପୃଥିବୀ ପୃଷ୍ଠ ଉତପ୍ତ ଗ୍ୟାସିୟ ପିଣ୍ଡ ଥିଲା ଏବଂ ଏଥିରେ ସବୁବେଳେ ବିସ୍ଫୋରଣ ଘଟୁଥିଲା । କ୍ରମେ ଏହା ଥଣ୍ଡା ହେଲା, ଏଥିରେ ଜଳ ଓ ବାୟୁମଣ୍ଡଳ ସୃଷ୍ଟି ହେଲା । ପ୍ରାୟ ୨୦୦ କୋଟି ବର୍ଷ ପୂର୍ବେ ପ୍ରଥମ ଏକ କୋଷୀ ପ୍ରାଣୀ 'ଆମିବା' ପୃଥିବୀରେ ଜନ୍ମଲାଭ କଲା । ଏହାପରେ ପୃଥିବୀ ପୃଷ୍ଠରେ ବହୁ ପରିବର୍ତ୍ତନ ଘଟିଯାଇଛି । ଏକ କୋଷୀ ପ୍ରାଣୀଙ୍କ ଯୁଗ, ହିମ ଯୁଗ, ସରୀସୃପ ପ୍ରାଣୀଙ୍କ ଯୁଗ, ସ୍ତନ୍ୟପାୟୀ ପ୍ରାଣୀଙ୍କ ଯୁଗ ଏବଂ ଶେଷରେ ବାନର ସୃଷ୍ଟି ଏବଂ ବାନରରୁ ଆଜିର ସଭ୍ୟ-ମାନବର କ୍ରମ ବିକାଶ ଘଟିଛି ବୋଲି ଆମେ ଅନୁମାନ କରୁଛୁ । ୫୫ ଲକ୍ଷରୁ ୭୫ ଲକ୍ଷ ବର୍ଷ ଭିତରେ ପ୍ରଥମ ବଣ ମଣିଷ ପୃଥିବୀ ପୃଷ୍ଠରେ ଚଲାବୁଲା କରୁଥିବାର ବୈଜ୍ଞାନିକମାନେ ମତ ଦେଇଛନ୍ତି ମାତ୍ର ତାହାର ବହୁ ପୂର୍ବରୁ ପ୍ରାୟ ୨୦୦ କୋଟି ବର୍ଷ ପୂର୍ବେ ପୃଥିବୀ ପୃଷ୍ଠରେ ପ୍ରଥମ

ଏକକୋଷୀ ପ୍ରାଣୀ ଜନ୍ମ ନେଇଥିଲେ ଏବଂ ୧୫।୨୦ କୋଟି ବର୍ଷ ଭିତରେ ଉଭୟଚର ପ୍ରାଣୀ ଯଥା ଡାଏନୋସରସ ପରି ବିରାଟକାୟ ପ୍ରାଣୀ ପୃଥିବୀ ପୃଷ୍ଠରେ ଦେଖାଦେଇଥିଲେ । ମାତ୍ର ଅଜ୍ଞାତରେ ପୃଥିବୀ ପୃଷ୍ଠରେ ଏପରି ପରିବର୍ତ୍ତନ ଯେ ଘଟିଥିଲା ଏବଂ ଡାଏନୋସରସ ପରି ହାତୀଠାରୁ ୪୦।୫୦ ଗୁଣ ବଡ଼ ଜୀବସବୁ ପୃଥିବୀ ପୃଷ୍ଠରେ ବାସ କରି ମରି ହଜି ଗଲେ. ଏସବୁ ବିଷୟରେ ଆମେ ଆଜି ଜାଣିବା କିପରି ? ମଣିଷ ତ ଏମାନଙ୍କର ଜନ୍ମ ଠାରୁ ବହୁ କୋଟି ବର୍ଷ ପରେ ପୃଥିବୀରେ ଜନ୍ମଲାଭ କରିଥିଲା । ସେତେବେଳେ ପୃଥିବୀ ପୃଷ୍ଠରେ କିପରି ପରିବର୍ତ୍ତନ ଘଟିଥିଲା, କେଉଁ କେଉଁ ପ୍ରାଣୀ ଜନ୍ମ ହୋଇଥିଲେ ତାହା ଜାଣିବାର ଉପାୟ କଣ ?

ତୁମେମାନେ କଥା କାହିଁକି କୁହ ? ତୁମର ମନର ଭାବନାକୁ ତୁମେ ପାଟିଦ୍ୱାରା କହି ଅନ୍ୟ ଆଗରେ ପ୍ରକାଶ କର । ଭୋକକଲେ ତୁମେ ଖାଇବାକୁ ମାଗ, ଶୋଷ କଲେ ପାଣି ମାଗ, ପଢ଼ିବାକୁ ଇଚ୍ଛା ହେଲେ ବହି ମାଗି ପାଠ ପଢ଼ । ମାତ୍ର ତୁମେ ହୁଏତ ଆଶ୍ଚର୍ଯ୍ୟ ହେବ ତୁମ ପୃଥିବୀ ପୃଷ୍ଠରେ କୋଟି କୋଟି ବର୍ଷ ଧରି ପଡ଼ି ରହିଥିବା ପଥର, ବିଭିନ୍ନ ପ୍ରକାର ଶିଳା ମଧ୍ୟ କଥା କୁହେ । ଏକଥା ଶୁଣି ତୁମକୁ ଅଡ଼ୁଆ ଅଡ଼ୁଆ ଲାଗୁଥିବ ନିଶ୍ଚୟ । ସତରେ କଣ ପଥର କଥା କୁହେ ? ସେ ତୁମ ପରି ପାଟି ଆଁ କରି କଥା ନ କହିଲେ ମଧ୍ୟ କିପରି କଥା କୁହେ ଏବଂ କଣ କୁହେ ଆସ ଆଲୋଚନା କରିବା ।



ଗୋଟିଏ ମାଛର ଫସିଲ୍ (ଜୀବାଶ୍ମ)

ମଣିଷ ବର୍ତ୍ତମାନ ପୃଥିବୀ ପୃଷ୍ଠର ସବୁ ଜୀବଙ୍କ ମଧ୍ୟରେ ଶ୍ରେଷ୍ଠ ତଥା ବୁଦ୍ଧିମାନ ପ୍ରାଣୀ । ପୃଥିବୀ ପୃଷ୍ଠରେ ମଣିଷର ସୃଷ୍ଟି ହେବା ପୂର୍ବରୁ ବହୁ ବର୍ଷ ଧରି ବିଭିନ୍ନ ପ୍ରକାର ପରିବର୍ତ୍ତନ ଲାଗି ରହିଥିଲା । ହଜାର ହଜାର ପ୍ରକାରର ବିଚିତ୍ର ଜୀବ ଜନ୍ମ ନେଇଥିଲେ । କ୍ରମେ ପୃଥିବୀରେ ବହୁ ପରିବର୍ତ୍ତନ ଘଟିବା ପରେ ମଣିଷ ଯାଇ ଜନ୍ମ ଗ୍ରହଣ କରିଥିଲା । ମାତ୍ର ଅତୀତରେ ପୃଥିବୀ ପୃଷ୍ଠରେ କଣ ସବୁ ଘଟିଯାଇଛି, କି କି ଜୀବ-ମାନେ ବାସ କରୁଥିଲେ, ସେମାନେ ଦେଖିବାକୁ କିପରି ଥିଲେ, ଖାଉ-ଥିଲେ କଣ, ରହୁଥିଲେ କିପରି ଇତ୍ୟାଦି ଆମେ କୋଟି କୋଟି ବର୍ଷ ପରେ କିପରି ଜାଣୁ ତୁମେମାନେ କହିପାରିବ ? ଏ ସବୁ ଜାଣିବାର କୌଣସି ଉପାୟ ନାହିଁ, ମାତ୍ର ସେହି ଅମଳରୁ ଅନ୍ୟ କେହି ଏହି ସବୁ ଘଟଣା ନ ଦେଖିଥିଲେ ମଧ୍ୟ ପୃଥିବୀ ପୃଷ୍ଠରେ ପଡ଼ିରହିଥିବା ଶିଳା ଖଣ୍ଡ ବା ପଥର ସେ ସବୁ ଦେଖିଛି । ତା'ର ଛାତି ଉପରେ ଯେଉଁ ସବୁ ଘଟଣା ମାନ ଘଟି ଯାଇଛି ତାକୁ ହିଁ ଆମକୁ ପଥର କୁହେ । ମଣିଷକୁ ଅତୀତର ଘଟଣାବଳୀ ଜଣାଇବାକୁ ପ୍ରକୃତି ବୋଧହୁଏ ଅତୀତ ପ୍ରାଣୀ, ଉଦ୍ଭିଦର ଶରୀରର ଛାପ, ବୃଲଚଲନ ଇତ୍ୟାଦି ବହୁ ବିଷୟରେ ପଥର ଦେହରେ ଲେଖିରଖିଛି । ପୂର୍ବକାଳରେ ପ୍ରାଣୀ ବା ଉଦ୍ଭିଦ ମରି ହଜି ଗଲେ ଏହି ପଥର ଉପରେ ପଡ଼ି ରହୁଥିଲେ । ଯେତେବେଳେ ପୃଥିବୀ ପୃଷ୍ଠରେ ଘନ ଘନ ପରିବର୍ତ୍ତନ ଲାଗି ରହିଥିଲା ଏବଂ ଏହି ପ୍ରାଣୀମାନଙ୍କର ଶରୀର ଉପରେ ଚାପ ପଡ଼ିବାରୁ ଏହାର ଶରୀରର ଏକ ଛାପ ବା ଚିତ୍ର ପଥର ଦେହରେ ଆଙ୍କି ହୋଇଯାଉଥିଲା । ଏହାକୁ ଆମେ ଇଂରାଜୀରେ 'ଫସିଲ୍' କହୁ । ଏବେ ପୃଥିବୀର ବିଭିନ୍ନ ଅଞ୍ଚଳରୁ ମିଳୁଥିବା ଏହି ଫସିଲରୁ ହିଁ ଆମେ ଅତୀତ ଯୁଗର ସବୁକଥା ଜାଣିପାରୁ । ନଚେତ୍ ମଣିଷ ଯେତେ ବୁଦ୍ଧିମାନ ହେଲେ ମଧ୍ୟ ଅତୀତ ପୃଥିବୀ ବିଷୟରେ କୌଣସି କଥା ଜାଣି ପାରନ୍ତା ନାହିଁ । ପଥର ବା ଶିଳାଖଣ୍ଡ ନିଜର ଶରୀରରୁ ଆମକୁ ଦେଖାଇ ସେଥିରେ ଲେଖାହୋଇ ରହିଥିବା ଚିତ୍ର ଆମକୁ ଦେଖାଇ ତାର ମନର ଭାବନା ଆମ ଆଗରେ ପ୍ରକାଶ କରି ଆମକୁ କେତେ ଉପାଦେୟ ତଥ୍ୟ ଜଣାଉଛି ତାହା ତ ତୁମେ ଜାଣିଲ । ତୁମକୁ ଭୋକ ହେଲେ ତୁମେ କଥା କହି ଯେପରି ନିଜର ମନର ଭାବନା ଜଣାଇ

ଦାଅ, ସେହିପରି ପଥର ନିଜର ମନର ଭାବନା ଅନ୍ୟ ଆଗରେ ଜଣାଇ କିପରି କଥା କହେ ତାହା ମଧ୍ୟ ତୁମ୍ଭେମାନେ ଆଜି ଜାଣିଲ । ବଡ଼ ହେଲେ ଏ ବିଷୟରେ ବହୁ ଅଧିକ ତଥ୍ୟ ନିଶ୍ଚୟ ତୁମେମାନେ ଜାଣି-ପାରିବ । ଏହି ଫସିଲମାନଙ୍କ ବଂଶଗତ ବହୁ ପ୍ରାଣୀଙ୍କର କଙ୍କାଳ ମଧ୍ୟ କେତେକ ସ୍ଥାନରୁ ଉଦ୍ଧାର କରାଯାଇଛି । ସେଥିରୁ ପୂର୍ବ କାଳର ପ୍ରାଣୀ, ଉଦ୍ଭିଦ ମାନଙ୍କ ବିଷୟରେ କେତେକ ତଥ୍ୟ ମଧ୍ୟ ଆମେ ପାଇଥାଉଁ ।



# ରାକ୍ଷସ ଜୀବ—ଡାଏନୋସରସ୍

ତୁମକୁ ଯଦି ପଚରାଯାଏ ପୃଥିବୀର ସବୁଠାରୁ ବଡ଼ ପ୍ରାଣୀ କିଏ ? ତୁମ୍ଭେମାନେ ହୁଏତ କହିବ ତିମି ମାଛ । ମାତ୍ର ତିମି ମାଛ ସବୁବେଳେ ସମୁଦ୍ର ଭିତରେ ଥାଏ । ଏହା ସ୍ଥଳଭାଗରେ ରହିପାରିବ ନାହିଁ । ମାତ୍ର ଆମ ସ୍ଥଳଭାଗର ସବୁଠାରୁ ବଡ଼ ପ୍ରାଣୀ ହେଉଛି ଆଫ୍ରିକାରେ ଥିବା ହାତୀ । ଏହାର ଓଜନ ଯେପରି ଆକାର ମଧ୍ୟ ସେହିପରି । ଆମ ଦେଶରେ ଥିବା ହାତୀଠାରୁ ଆଫ୍ରିକା ମହାଦେଶରେ ଦେଖାଯାଉଥିବା ହାତୀ ବଡ଼ । ଏହାର କାନ ଆମ ଦେଶର ହାତୀଠାରୁ ଆକାରରେ ବହୁତ ବଡ଼ । ଏହି ହାତୀର ଓଜନ ପ୍ରାୟ ସାଢ଼େ ୬ଟନ ଯାଏ ହୋଇଥାଏ । ଏହି ବିରାଟ-କାୟ ଜନ୍ତୁ ଦିନକୁ ପ୍ରାୟ ଅଧଟନ ଓଜନର ଗଛପତ୍ର ଡାଳ ଭାଙ୍ଗି ଖାଦ୍ୟ ରୂପେ ଖାଏ । ପୂର୍ବେ ହାତୀମାନେ ବଣ ଜଙ୍ଗଲରେ ଦଳ ଦଳ ହୋଇ ରହୁଥିଲେ, ମାତ୍ର ଏବେ ଆମେମାନେ ସେମାନଙ୍କୁ ଶିକ୍ଷାଦେଇ ବିଭିନ୍ନ କାମରେ ଲଗାଇ ପାରୁଛୁ । ବ୍ରହ୍ମଦେଶରେ ହାତୀମାନେ ଜଙ୍ଗଲରୁ କାଠ ବୋହିବାଠାରୁ ବିଭିନ୍ନ ଜିନିଷପତ୍ର ବୋହି ମଣିଷକୁ ସାହାଯ୍ୟ କରିଥାନ୍ତି । ସର୍କସରେ ହାତୀ କିପରି ବଲ ଖେଳେ, ଠାକୁରପୂଜା କରେ, ତାହାତ ତୁମେମାନେ ସବୁ ଦେଖିଥିବ ! ପୂର୍ବେ ଯୁଦ୍ଧକ୍ଷେତ୍ରରେ ହାତୀ-ମାନଙ୍କୁ ବ୍ୟବହାର କରାଯାଉଥିଲା ଏବଂ ସେମାନେ ସେଠାରେ ବୀରତ୍ୱ ପ୍ରଦର୍ଶନ କରି ଶତ୍ରୁ ସହିତ ମୁକାବିଲା କରୁଥିଲେ ।

ମାତ୍ର ପୂର୍ବେ ଆମ ପୃଥିବୀ ପୃଷ୍ଠରେ ହାତୀଠାରୁ ୫୦ଗୁଣ ଓଜନ ଓ ଆକୃତିର ବିରାଟକାୟ ଜନ୍ତୁମାନେ ବାସ କରୁଥିଲେ, ଏହା ତୁମେ ଜାଣ କି ? ସେହି ଜନ୍ତୁ କେବଳ ବେକ ଟେକି ଠିଆ ହେଲେ ଗୋଟିଏ ବଡ଼ ନଡ଼ିଆଗଛର ଉଚ୍ଚର ହେଉଥିଲେ । ଏଭଳି ବିରାଟକାୟ ରାକ୍ଷସଜୀବ ଆଜିଠାରୁ ପ୍ରାୟ ପନ୍ଦରରୁ କୋଡ଼ିଏ କୋଟି ବର୍ଷ ପୂର୍ବେ ପୃଥିବୀ ପୃଷ୍ଠରେ

ଦେଖା ଦେଇଥିଲେ । ଏହି ବିରାଟ ରାକ୍ଷସ ଜନ୍ତୁକୁ କୁହାଯାଉଥିଲା—ଡାଏନୋସରସ ।




ପ୍ରାୟ ପାଞ୍ଚ ଶହ କୋଟି ବର୍ଷ ପୂର୍ବେ ପୃଥିବୀର ଜନ୍ମ । ସେତେବେଳେ ଏହା ଏକ ଉତପ୍ତ ଗ୍ୟାସିୟ ପିଣ୍ଡ ଆକାରରେ ସୂର୍ଯ୍ୟ ଚାରିପଟେ ବୁଲୁଥିଲା । ପୃଥିବୀ ପୃଷ୍ଠରେ ଗଛଲତା, ଜୀବଜନ୍ତୁ କିଛି ନଥିଲେ । କ୍ରମେ ଏହା ଶୀତଳ ହୋଇ ଥଣ୍ଡା ହେଲା ଏବଂ ଜଳ ସୃଷ୍ଟି ହୋଇ ପୃଥିବୀର ଅଧିକାଂଶ ଭାଗ ବୁଡ଼ିରହିଲା । ସେତେବେଳେ ପୃଥିବୀ ପୃଷ୍ଠରେ ଘନ ଘନ ପରିବର୍ତ୍ତନ ଲାଗି ରହିଥିଲା । ସମୁଦ୍ରର ଜଳ ଜୀବନ୍ତବସ୍ତୁ ବଞ୍ଚିରହିବା ପରି ବଅସ୍ଥାକୁ ଆସିବା ପରେ ଏଥର ପ୍ରଥମେ ଶିଉଳି ଓ ପରେ ପ୍ରଥମ, ଏକକୋଷୀ ଜୀବ ସୃଷ୍ଟି ହେଲା । ବୈଜ୍ଞାନିକମାନେ ଗବେଷଣା କରି ଜାଣି ପାରିଛନ୍ତି ଯେ ପ୍ରାୟ ୨୦୦ କୋଟି ବର୍ଷ ପୂର୍ବେ ଏକକୋଷୀ ପ୍ରାଣୀ "ଆମିବା" ପ୍ରଥମେ ସମୁଦ୍ର ପୃଷ୍ଠରେ ଜନ୍ମଲାଭ କରିଥିଲା । ଜୀବନ ବା

କୋଷରେ ମୁଖ୍ୟ ଅଂଶ ପ୍ରୋଟୋପ୍ଲାଜମକୁ ନେଇ ଏହି ଏକକୋଷୀ ପ୍ରାଣୀ ପ୍ରଥମ ଜୀବ ହିସାବରେ ଜନ୍ମ ନେବାପରେ କ୍ରମେ ଅନ୍ୟାନ୍ୟ ପ୍ରାଣୀଙ୍କର ସୃଷ୍ଟି ଆରମ୍ଭ ହୋଇଥିଲା । ଏହାର ପ୍ରାୟ ୫୦ କୋଟି ବର୍ଷ ପରେ ମାଛ ଜାତୀୟ ପ୍ରାଣୀ, କୀଟ ପତଙ୍ଗ ପୃଥିବୀ ପୃଷ୍ଠରେ ସୃଷ୍ଟି ହୋଇଥିଲେ । ପ୍ରାୟ ୨୦ କୋଟି ବର୍ଷ ପୂର୍ବେ ପୃଥିବୀ ପୃଷ୍ଠରେ ଉଭୟଚର ପ୍ରାଣୀ ଜନ୍ମଲାଭ କରିଥିଲେ । ଆଜିଯାଏ ସମୁଦ୍ରରେ ଦେଖାଯାଉଥିବା ବିଭିନ୍ନ ପ୍ରକାର ସାମୁକା ଓ ଅନ୍ୟ କେତେକ ଜୀବଙ୍କର ଜନ୍ମ ଏହି ସମୟରୁ ହିଁ ହୋଇଥିଲି ବୋଲି ପ୍ରମାଣ ମିଳୁଛି । ଏହାପରେ ପୃଥିବୀ ପୃଷ୍ଠ କ୍ରମେ ଶୁଷ୍କ ହୋଇପଡ଼ୁଥିଲା ଏବଂ କେତେକ ମାଛ ଜାତୀୟ ପ୍ରାଣୀ କ୍ରମେ ସମୁଦ୍ର ପୃଷ୍ଠରୁ ପୃଥିବୀର ସ୍ଥଳଭାଗକୁ ଆସି ବସବାସ କରିବାକୁ ଲାଗିଲେ । ସେମାନଙ୍କ ଦେହରେ ହାତ ଗୋଡ଼ ପରି ଅଙ୍ଗ ପ୍ରତ୍ୟଙ୍ଗ ଏବଂ ଫୁସ୍‌ଫୁସ୍ ଇତ୍ୟାଦି ସୃଷ୍ଟି ହେଲା । କେତେକ ପ୍ରାଣୀଙ୍କ ଦେହରେ ୨ଟି ଆଖି ବ୍ୟତୀତ ତୃତୀୟ ଆଖି ମଧ୍ୟ ରହିଥିଲା । ଏହି ପ୍ରକାର ଉଭୟଚର ପ୍ରାଣୀଙ୍କ ମଧ୍ୟରେ ରାକ୍ଷସ ଜୀବ ଡାଏନୋସରସ ଜନ୍ମ ନେଲା । ଆଜକୁ ପ୍ରାୟ ୧୫ରୁ ୨୦ କୋଟି ବର୍ଷ ମଧ୍ୟରେ ଏହି ଡାଏନୋସରସ ପୃଥିବୀ ପୃଷ୍ଠରେ ଦେଖାଦେଇଥିଲା । ପୃଥିବୀର ଜନ୍ମଠାରୁ ଆଜିଯାଏ ଯେତେ ଜୀବ ଏହା ଉପରେ ସୃଷ୍ଟି ହୋଇଛନ୍ତି, ଏହି ପ୍ରାଣୀ ସବୁଠାରୁ ବଡ଼ ବୋଲି ଜଣାଯାଇଛି । ଏହାର ଶରୀରର ଲମ୍ବ ୧୮ ଫୁଟରୁ ୯୦ ଫୁଟ ଏବଂ ଉଚ୍ଚତା ୧୩ ଫୁଟରୁ ୬୦ ଫୁଟ ପର୍ଯ୍ୟନ୍ତ ହୋଇଥିଲା । ଦୁଇଟି ବିରାଟକାୟ ପଛ ଗୋଡ଼ ସାହାଯ୍ୟରେ ଏହି ଜନ୍ତୁ ଚାଲୁଥିଲା ଏବଂ ଏକ ବିରାଟ ଲାଞ୍ଜ ଦ୍ୱାରା ଶରୀରର ଭାରସାମ୍ୟ ରକ୍ଷା କରୁଥିଲା । ଏହାର ଆଗଗୋଡ଼ ଦୁଇଟି ଅତି ଛୋଟ ଥିଲା ଏବଂ ଏହା କେବଳ ଯେଉଁ ଗଛରୁ ସେମାନେ ଖାଦ୍ୟ ଖାଉଥିଲେ ତାକୁ ଧରି ରଖିବାରେ ସାହାଯ୍ୟ କରୁଥିଲା । ଏହି ଜୀବ ମୁଖ୍ୟତଃ ନିରାମିଷାଶୀ ଥିଲା ଏବଂ ଗଛ, ପତ୍ର ଖାଇ ବଞ୍ଚୁଥିଲା । ଏହାର ମୁଖମଣ୍ଡଳର ଆକାର ବିରାଟ ଥିଲା । ମୁଖମଣ୍ଡଳର ମାଡ଼ିର ଉଭୟ ପାର୍ଶ୍ୱରେ ଖୁବ୍ ତୀକ୍ଷ୍ଣ ଧାରୁଆ ବଡ଼ ବଡ଼ ଦାନ୍ତ ଥିଲା । ଏହି ଦାନ୍ତ ସାହାଯ୍ୟରେ ସେ ଆତ୍ମରକ୍ଷା କରିପାରୁଥିଲା । ଏହା ବ୍ୟତୀତ ବହୁ ପ୍ରକାରର ଡାଏନୋସରସ ସେତେବେଳେ ଭୂପୃଷ୍ଠରେ ଦେଖାଦେଇ-

ଥିଲେ । ପ୍ରାୟ ଏକ କୋଟି ବର୍ଷ ଯାଏ ଏମାନେ ପୃଥିବୀ ପୃଷ୍ଠରେ ବଞ୍ଚିରହିଥିଲେ ଏବଂ କ୍ରମେ କ୍ରମେ ସମ୍ପୂର୍ଣ୍ଣରୂପେ ଏମାନଙ୍କର ବଂଶ ପୃଥିବୀ ପୃଷ୍ଠରୁ ଲୋପ ପାଇଗଲା । କେତେକ ଡାଏନୋସରସ ଦେହରେ ହାଡ଼ୁଆ, ମୁନିଆ ପଦାର୍ଥ ସୃଷ୍ଟି ହୋଇ ତାହା ଶତ୍ରୁ କବଳରୁ ସେମାନଙ୍କୁ ରକ୍ଷା କରୁଥିଲା । ଷ୍ଟେଗୋସରସ ଜାତୀୟ ପ୍ରାଣୀ ଦେହରେ ବଡ଼ ବଡ଼ ପ୍ଲେଟ ପରି ହାଡ଼ୁଆ ପ୍ଲେଟ ଲାଗିରହି ଥିଲା ଏବଂ ଏହାର ମୁଣ୍ଡ ଶରୀର ତୁଳନାରେ ବହୁତ ଛୋଟ ଥିଲା । ଏହାର ଶରୀର ପୃଥୁଳକାୟ ଥିଲା ଏବଂ ଆଗ ଓ ପଛଗୋଡ଼ ସାହାଯ୍ୟରେ ଏହା ଚାଲୁଥିଲା । କେତେକ ଶ୍ରେଣୀର ଡାଏନୋସରସ ଅନ୍ୟ ପ୍ରାଣୀର ମାଂସ ଖାଇ ବଞ୍ଚୁଥିଲେ । କେତେକଙ୍କର ବଡ଼ ବଡ଼ ଡେଣା ଥିଲା ଏବଂ ଏମାନେ ସମୁଦ୍ରରେ ପହଁରି ପାରୁଥିଲେ ଏବଂ ଫୁସଫୁସ ଦ୍ୱାରା ନିଶ୍ୱାସ ପ୍ରଶ୍ୱାସ ନେଉଥିଲେ । ଗୋଟିଏ ଗୋଟିଏ ଡାଏନୋସରସର ଆକାର ଆମ ଦେଶର ହାତୀଠାରୁ ୪୦।୫୦ ଗୁଣ ଅଧିକା ଥିଲା ।


ଷ୍ଟେଗୋସରସ

ସେତେବେଳେ ଏହି ବିରାଟକାୟ ଜନ୍ତୁ ସବୁଠାରୁ ବଳବାନ ଜନ୍ତୁଥିଲା । ଏହି ଜନ୍ତୁ କାହାକୁ ଡରୁନଥିଲା । ମାତ୍ର ଏମାନଙ୍କର ସମୂଳେ ବିନାଶ କାହିଁକି ଘଟିଲା ସେ ବିଷୟରେ ସଠିକ ତଥ୍ୟ ଆଜିଯାଏ ଜଣା-ଯାଇନାହିଁ । ତଥାପି ଏମାନେ ବାସ କରୁଥିବା ଅଞ୍ଚଳରେ ବୃକ୍ଷ ଲତା

ନଷ୍ଟ ହୋଇ ଖାଦ୍ୟାଭାବ ଦେଖାଦେବାରୁ କିମ୍ବା କୌଣସି ପାରିପାର୍ଶ୍ୱିକ ପାଗରେ କିମ୍ବା ଭୂପୃଷ୍ଠରେ ହଠାତ୍ ପରିବର୍ତ୍ତନ ଦେଖାଦେବାରୁ ସେହି ଜଳବାୟୁ ସହିତ ଏମାନେ ନିଜକୁ ଖାପ ଖୁଆଇ ନପାରି ହୁଏତ ମୃତ୍ୟୁ-ବରଣ କରିଥାଇ ପାରିଥାନ୍ତି ବୋଲି କେତେକ ବୈଜ୍ଞାନିକ ମତ ଦିଅନ୍ତି । କେତେକ ମତ ଦିଅନ୍ତି ଯେ ସେତେବେଳେ ଆଗ୍ନେୟଗିରିରୁ ଅଗ୍ନି ଉଦ୍‌ଗୀରଣ ହୋଇ ଏମାନେ ମରିଯାଇଥିଲେ । ବୃହତ୍କାୟ ସ୍ଥୂଳ ଶରୀର ଯୋଗୁ ଏମାନେ ଏକ ସ୍ଥାନରୁ ଅନ୍ୟ ଏକ ନୂତନ ସ୍ଥାନକୁ ଯିବାରେ ଅସୁବିଧା ଭୋଗ କରୁଥିଲେ ଏବଂ କ୍ରମାଗତ ଖାଦ୍ୟ ପଦାର୍ଥ ନପାଇ ଏମାନେ ବଂଶ ବୃଦ୍ଧି କରି ନପାରି ପରିଶେଷରେ ଲୋପ ପାଇ ଯାଇଥିଲେ ବୋଲି କେତେକ ମତ ଦିଅନ୍ତି । ପୃଥିବୀର ବହୁ ସ୍ଥାନରୁ ମିଳୁଥିବା ଏହି ଜନ୍ତୁର 'ଫସିଲ୍' 'ମୃତ ଶରୀରର ସ୍ତୂପ' ଦେଖି ଆମେ ଏହି ବିରାଟକାୟ ଜୀବ ସମ୍ପର୍କରେ ବହୁ ବିଷୟ ଜାଣିପାରୁ । ତୁମେମାନେ ବଡ଼ ହେଲେ ପୃଥିବୀର ଜନ୍ମ-ଇତିହାସ ପଢ଼ିବାବେଳେ ଏହି ଜୀବ ବିଷୟରେ ବହୁ ତଥ୍ୟ ପାଇପାରିବ ।



# ସମୁଦ୍ର ଭିତରେ ଘୋଡ଼ା

ତୁମେମାନେ ପ୍ରାୟ ସମସ୍ତେ ଘୋଡ଼ା ଦେଖିଥିବ । ସର୍କସରେ ଘୋଡ଼ା ଦୌଡ଼ ବଛିନ୍ନ ପ୍ରକାର ଖେଳ ଦେଖାଇ ତୁମକୁ ବହୁତ ଆନନ୍ଦ ଦିଏ । ଏହା ବ୍ୟତୀତ ପୂର୍ବ କାଳରେ ଯେତେବେଳେ ମଟରଗାଡ଼ି ଓ ଅନ୍ୟାନ୍ୟ ଯାନବାହାନର ଉଦ୍ଭାବନ ହୋଇ ନଥିଲା ଏବଂ ରାସ୍ତାଘାଟ ତିଆରି ହୋଇ ନଥିଲା, ସେତେବେଳେ ଘୋଡ଼ା ହିଁ ମଣିଷର ପରମ ସାହାଯ୍ୟକାରୀ ବନ୍ଧୁ ଥିଲା । କୌଣସି ଦୂର ସ୍ଥାନକୁ ଯିବାକୁ ହେଲେ, ସମ୍ବାଦ ପ୍ରେରଣ କରିବାକୁ ହେଲେ ବା ଶତ୍ରୁ ସହିତ ଯୁଦ୍ଧବେଳେ ଘୋଡ଼ା




ପିଠିରେ ସୈନିକ ବସି ଯୁଦ୍ଧ କ୍ଷେତ୍ରରେ ଶତ୍ରୁ ସହ ମୁକାବିଲା କରୁଥିଲା । ଇତିହାସ ବହିରୁ ତୁମେ ମୋଗଲ ସାମ୍ରାଜ୍ୟ ଅମଳରେ ତଥା ଛତ୍ରପତି

ଶିବାଜୀ, ରାଣୀ ଦୁର୍ଗାବାଈ ପ୍ରମୁଖ ବୀରମାନେ ଘୋଡ଼ାପିଠିରେ ବସି କପରି ସେମାନଙ୍କର ବୀରତ୍ୱ ପ୍ରଦର୍ଶନ କରିଥାଇଛନ୍ତି, ତାହା ପଢ଼ିଥିବ। ପୂର୍ବେ ଆମ କଳିଙ୍ଗର ସେନା ଘୋଡ଼ା ପିଠିରେ ବସି ଯୁଦ୍ଧକ୍ଷେତ୍ରରେ ଅତି ଅଲୌକିକ ଶକ୍ତି ଦେଖାଇ ପାରୁଥିଲେ । ସେଥିପାଇଁ ଓଡ଼ିଶା ଶାସନର ପ୍ରତୀକ ରୂପେ ଘୋଡ଼ା ଓ ଭଗ୍ନ ସୈନିକର ମୂର୍ତ୍ତି ରଖା-ଯାଇଛି । ଏହା ତୁମ୍ଭେମାନେ ପ୍ରାୟ ଦେଖିଥିବ । ଘୋଡ଼ା ଦୌଡ଼ିବାରେ ପ୍ରସିଦ୍ଧ ।

ଆମେ ଆଜି ଅନ୍ୟ ଏକ ଘୋଡ଼ା ବିଷୟରେ ଆଲୋଚନା କରିବା । ତାହା ହେଉଛି ସମୁଦ୍ର ଘୋଡ଼ା । ତୁମକୁ ବୋଧହୁଏ ଆଶ୍ଚର୍ଯ୍ୟ ଲାଗିପାରେ ଯେ ସମୁଦ୍ର ଭିତରେ ଘୋଡ଼ା କରେ କ'ଣ ? ଏହା ପାଣିରେ ଦୌଡ଼େ କପରି ? ତୁମ୍ଭେମାନେ ବୋଧହୁଏ ସମୁଦ୍ର ଘୋଡ଼ାକୁ ଦେଖି ନ ଥିବ । ସ୍ଥଳଭାଗର ଘୋଡ଼ାର ମୁହଁ ପରି ଏହାର ମୁହଁ । ସ୍ଥଳଭାଗର ଘୋଡ଼ା ଯେପରି ଖୁବ୍ ଜୋର୍‌ରେ ଦୌଡ଼ିପାରେ, ଏହି ଘୋଡ଼ା ସେତେ ଜୋର୍‌ରେ ଦୌଡ଼ିପାରେ ନାହିଁ । ପ୍ରାଣୀବିତମାନେ ଏହାର ନାମ ଦେଇ-ଛନ୍ତି ସମୁଦ୍ରଘୋଡ଼ା ବା ହିପୋକ୍ୟାମ୍ପସ । ସବୁଠାରୁ ଆଶ୍ଚର୍ଯ୍ୟ କଥା ଯେ ସମୁଦ୍ର ଘୋଡ଼ାର ଦୌଡ଼ିବାପାଇଁ ଗୋଡ଼ ନାହିଁ । ଏହା ଆକାରରେ ବହୁତ ଛୋଟ । ପ୍ରଶାନ୍ତ ମହାସାଗର ଅଞ୍ଚଳରେ ଦେଖାଯାଉଥିବା ସମୁଦ୍ର ଘୋଡ଼ାର ଲମ୍ବ ପ୍ରାୟ ୩ ଇଞ୍ଚ । ତୁମ ମାନଙ୍କ ହାତ ପାପୁଲିରେ ମଧ୍ୟ ଏହି ସମୁଦ୍ରଘୋଡ଼ାକୁ ତୁମେ ରଖିପାର । ଏମାନେ ଦଳ ଦଳ ହୋଇ ସମୁଦ୍ର ମଧ୍ୟରେ ପାଣିରେ ପହଁରୁଥାନ୍ତି । ଏମାନଙ୍କର ବିଶେଷତ୍ୱ ହେଉଛି ଯେ କେବଳ ତଳୁ ଉପରକୁ ସିଧାଭାବରେ ବା ଉପରୁ ତଳକୁ ଏମାନେ ପହଁରି ପାରନ୍ତି । କଣ୍ଢେଇ କରି ମାଛମାନଙ୍କ ପରି ଏମାନେ ପହଁରି ପାରନ୍ତି ନାହିଁ । ଏମାନଙ୍କ ପାଟିର ଆକୃତି ଗୋଲାକାର । ମାଛମାନଙ୍କ ପରି ଗାଲି ସାହାଯ୍ୟରେ ନିଃଶ୍ୱାସ ପ୍ରଶ୍ୱାସ ନିଅନ୍ତି । ଗୋଲାକାର ଛୋଟ ଛୋଟ ଦୁଇଟି ଆଖିରେ ଏମାନେ ଦେଖିପାରନ୍ତି । ବିଶେଷତ୍ୱ ହେଉଛି ଯେ ଏହାର ଦେହ ହାଡ଼ୁଆ କୁଣ୍ଡଳୀ ବା ପ୍ଲେଟଦ୍ୱାରା ତିଆରି । ଏହାର ଗୋଡ଼ ନଥିବାରୁ ଦେହରେ ଥିବା ଗୁଡ଼ିଏ ଡେଣା ସାହାଯ୍ୟରେ

ପାଣିରେ ପହଁରୁଥାଏ । ଏହା ଉଷ୍ଣ ଲବଣ ଜଳରେ ସାଧାରଣତଃ ବାସ କରିବାକୁ ଭଲ ପାଏ । ସମୁଦ୍ରରେ ଭାସୁଥିବା ଉଦ୍ଭିଦ ଦେହରେ ଏମାନେ ଲାଞ୍ଜକୁ ବାନ୍ଧି ରହିଥାନ୍ତି ଏବଂ ଏହି ଉଦ୍ଭିଦ ସହିତ ଭାସି ଭାସି ଯାଆନ୍ତି । ସମୁଦ୍ରରେ ଥିବା ଉଦ୍ଭିଦର ରଙ୍ଗପରି ସମୁଦ୍ର ଘୋଡ଼ାର ରଙ୍ଗ ସବୁଜ ମିଶା ବାଇଗଣି । କେତେକ ବଡ଼ ସମୁଦ୍ରମାଛ ଏମାନଙ୍କୁ ଖାଇ ଯାଆନ୍ତି । ମାତ୍ର ଏମାନଙ୍କ ଦେହର ହାଡ଼ୁଆ ଅଂଶ ଦେଖି ଅଧିକାଂଶ ଏମାନଙ୍କୁ ଖାଆନ୍ତି ନାହିଁ । ସମୁଦ୍ର ମଧ୍ୟରେ ଭାସୁଥିବା ବିଭିନ୍ନ ଉଦ୍ଭିଦ, ଛୋଟ ଛୋଟ ପ୍ରାଣୀ, ମାଛ ଅଣ୍ଡା ପ୍ରଭୃତି ଏମାନଙ୍କର ପ୍ରଧାନ ଖାଦ୍ୟ ।

ପୁରୁଷ ସମୁଦ୍ରଘୋଡ଼ା ଛୋଟ ପିଲା ସମୁଦ୍ରଘୋଡ଼ାର ଯତ୍ନ ନିଏ । ଆଶ୍ଚର୍ଯ୍ୟର ବିଷୟ ଯେ ପେଟ ତଳେ ମାଙ୍କଡ଼ଙ୍କାରୁ ତାର ଛୁଆକୁ ରଖିବା ପାଇଁ ଏକ ଥଳି ଥିବାପରି ପୁରୁଷ ସମୁଦ୍ର ଘୋଡ଼ା ପେଟ ତଳେ ଏକ ଥଳି ଥାଏ । ଏହି ଥଳରେ ଛୋଟ ସମୁଦ୍ରଘୋଡ଼ା ପଶି ରହିଥାଏ । ଲାଞ୍ଜର ଆରମ୍ଭ ସ୍ଥାନରେ ଶରୀରର ଆଗ ପାଖରେ ପୁରୁଷ ସମୁଦ୍ର ଘୋଡ଼ା ଦେହରେ ଏହିପ୍ରକାର ଥଳି ରହିଥାଏ ।

ସ୍ତ୍ରୀ ସମୁଦ୍ର ଘୋଡ଼ା ଏକ ସମୟରେ ୧୫୦ରୁ ୨୦୦ ଯାଏ ଅଣ୍ଡା ପୁରୁଷ ସମୁଦ୍ରଘୋଡ଼ାର ଦେହରେ ଥିବା ଥଳିରେ ଦିଏ । ପୁରୁଷ ସମୁଦ୍ର ଘୋଡ଼ା ଏହାକୁ ଯତ୍ନର ସହିତ ନିଜ ଥଳିରେ ଧରି ରଖେ । ସାଧାରଣତଃ ଅଣ୍ଡା ଫୁଟି ସେଥିରୁ ଛୁଆ ବାହାରିବାକୁ ୪୦ରୁ ୪୫ ଦିନ ସମୟ ଲାଗେ । ଅଣ୍ଡାରୁ ଛୁଆ ବାହାରିବା ପରେ ସ୍ତ୍ରୀ ସମୁଦ୍ରଘୋଡ଼ା ପରିବର୍ତ୍ତେ ପୁରୁଷ ସମୁଦ୍ର ଘୋଡ଼ା ପିଲମାନଙ୍କର ଯତ୍ନ ନିଏ । ସେମାନେ ବଡ଼ ହୋଇ ନିଜେ ନିଜର ଖାଦ୍ୟ ସଂଗ୍ରହ କରି ସବଳ ହେବା ପର୍ଯ୍ୟନ୍ତ ପୁରୁଷ ସମୁଦ୍ର ଘୋଡ଼ା ସେମାନଙ୍କର ଯତ୍ନ ନିଏ ।

ଏହାର ମୁଣ୍ଡ ଓ ମୁଖର ଆକୃତି ଘୋଡା ପରି ହୋଇଥିବାରୁ ପ୍ରାଣୀବିତ୍‌ମାନେ ଏହାର ନାମକରଣ ସମୁଦ୍ର ଘୋଡ଼ା କରିଛନ୍ତି । ମାତ୍ର

ଏହା ପ୍ରକୃତିରେ ଏକ ମାଛ । ସମୁଦ୍ର ମଧ୍ୟରେ ଥିବା ହଜାର ହଜାର ବିଚିତ୍ର ଆକୃତି । ପ୍ରକୃତିର ଜୀବ, ମାଛମାନଙ୍କ ମଧ୍ୟରୁ ଏହା ଗୋଟିଏ ।

ପିଲାମାନେ, ତୁମେମାନେ ବୋଧହୁଏ ସମୁଦ୍ର ଘୋଡ଼ାକୁ ଦେଖି-ନଥିବ । ପ୍ରାଣୀ ବିଜ୍ଞାନ ବିଭାଗରେ ବିଜ୍ଞାନବିତ୍ ମାନେ ଏହାକୁ କାଚଜାରରେ ସଂରକ୍ଷଣ କରି ରଖିଥାନ୍ତି । ସୁବିଧା ପାଇଲେ ନିଶ୍ଚୟ ଦେଖିବାକୁ ଚେଷ୍ଟା କରିବ ।



# ଗଛ ମାଂସ ଖାଏ

ତୁମମାନଙ୍କ ମଧ୍ୟରୁ ଅନେକ ମାଛ, ମାଂସ, ଅଣ୍ଡା ପ୍ରଭୃତି ଖାଇବାକୁ ଭଲପାଅ । ପିଙ୍କି, ରିଙ୍କି, ଲୁନା ମାଛ ନହେଲେ ଭାତ ନ ଖାଇ ଅଝଟ କରନ୍ତି । ମାଛ ବା ମାଂସ ଘରକୁ ଆସିବା ଦିନ ସେମାନେ ଜଗି ବସିଥାନ୍ତି । ମାଛ ଭଜା ଖାଇସାରି ଉଠନ୍ତି । ମାତ୍ର ତୁମ ମାନଙ୍କୁ ଯଦି ପଚରାଯାଏ ଯେ ତୁମେମାନେ ମାଛ ମାଂସ ଖାଅ କାହିଁକି ? ତୁମେ କହିପାରିବ କି ? ବୋଧହୁଏ କହିବ ଏହା ସୁସ୍ୱାଦୁ ତେଣୁ ଆମ୍ଭେମାନେ ଏହାକୁ ଖାଉ । ମାତ୍ର ସୁସ୍ୱାଦୁ ହେବା ସଙ୍ଗେ ସଙ୍ଗେ ମାଛ, ମାଂସ, ଅଣ୍ଡାରେ ବହୁ ପରିମାଣରେ ପ୍ରୋଟିନ ବା ପୁଷ୍ଟିସାର ଖାଦ୍ୟ ଅଛି ଯାହାକି ଆମ ଶରୀରକୁ ହୃଷ୍ଟପୁଷ୍ଟ କରି ପୁଷ୍ଟି ଓ ଶକ୍ତି ଯୋଗାଏ ଏବଂ କ୍ଷୟ ହେଉଥିବା ଅଂଶ ପୂରଣ କରାଇ ଶରୀରକୁ ବଳବାନ କରାଏ । ତୁମେ ମାନେ ହୁଏତ ପ୍ରଶ୍ନ କରିପାର ଏ ପ୍ରୋଟିନ ପୁଣି କଣ ? ଗ୍ରୀକ ଶବ୍ଦରୁ ଆସିଥିବା ପ୍ରୋଟିନର ଅର୍ଥ "ପ୍ରଥମ" ବା "ଫାଷ୍ଟ" । ଏହା ପ୍ରତ୍ୟେକ ଜୀବ କୋଷର ପ୍ରଥମ ଉପାଦାନ । ଅଣ୍ଡାର ଧଳା ଅଂଶ, ଶିଙ୍ଗ ଓ ଶରୀରର ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗ ତିଆରିରେ ପ୍ରୋଟିନର ଆବଶ୍ୟକତା ରହିଛି । ଆମ ଦେହରେ ବା ଯେ କୌଣସି ପ୍ରାଣୀ, ଉଦ୍ଭିଦର କୋଷର ମୂଳ ଉପାଦାନ ହିଁ ପ୍ରୋଟିନ । ଏହି ପ୍ରୋଟିନ ଆମ କୋଷର ଜୀବନ୍ତ ମୁଖ୍ୟ ଅଂଶ ପ୍ରୋଟପ୍ଲାଜମକୁ ତିଆରି କରେ ଏବଂ ଶରୀରକୁ ଶକ୍ତି ଯୋଗାଇଥାଏ । ଗଛ ମାଟିରୁ ଆମୋନିୟମ ଲବଣ, ନାଇଟ୍ରେଟସ ଓ ବାୟୁମଣ୍ଡଳରୁ ଅଙ୍ଗାରକାମ୍ଳ ଆଣି ଆମିନୋଏସିଡ଼ ନାମକ ଏକ ପଦାର୍ଥ ନିଜ ଦେହରେ ତିଆରି କରେ । ଏହି ଆମିନୋ ଏସିଡ଼ର ମିଶ୍ରଣରେ ପ୍ରୋଟିନ ତିଆରି ହୁଏ ; ପ୍ରାଣୀମାନେ ବା ଆମ୍ଭେମାନେ ସାଧାରଣତଃ ଗଛ ବୃକ୍ଷରୁ ବା ଛେଳି ମେଣ୍ଢା ଗଛ ବୃକ୍ଷ ଖାଇ ନିଜ ମାଂସରେ ସଞ୍ଚୟ କରି ରଖିଥିବା ପ୍ରୋଟିନକୁ ଆମେ ବିଭିନ୍ନ ପ୍ରାଣୀଙ୍କୁ ମାରି ତାରି ମାଂସରୁ ପାଇଥାଉ । ଏହା ଆମ ଶରୀରକୁ ଗଲେ ଭିନ୍ନ ଆମିନୋଏସିଡ୍‌ରେ ପରିଣତ ହୁଏ ଏବଂ ରକ୍ତରେ ଶରୀରର ବିଭିନ୍ନ ସ୍ଥାନକୁ ଯାଇ ସେଠାରେ ପୁଣି ଏକତ୍ର ମିଶି ପ୍ରୋଟିନ ରୂପେ ଶରୀର ଦ୍ୱାରା ବ୍ୟବହୃତ ହୁଏ ।

ତୁମେ ତ ଦେଖିଥିବ ଆମ ମଣିଷ ମାନେ ଯେ କେବଳ ମାଛ, ମାଂସ ଖାଆନ୍ତି ତାହା ନୁହେଁ, ଜୀବଜଗତର ବହୁ ପଶୁପକ୍ଷୀ ମଧ୍ୟ ମାଂସ ଖାଆନ୍ତି । ବିରାଡ଼ି ମାଛ, ମାଂସ ଦେଖିଲେ ଉଠେ ନାହିଁ । କୁକୁର ଖଣ୍ଡେ ମାଂସ ହାଡ଼ ପାଇବାକୁ ତାର ସାଙ୍ଗସାଥୀଙ୍କ ସହିତ ଝଗଡ଼ା କରେ । ବାଘ, ଭାଲୁ, ବିଲୁଆ, ବଗ, ଗେଣ୍ଡାଳିଆ, ଚିଲ, ସାଗୁଣା, ବାଜପକ୍ଷୀ ପ୍ରଭୃତି ବହୁ ପଶୁପକ୍ଷୀ କେବଳ ମାଛ, ମାଂସ ଖାଇ ବଞ୍ଚନ୍ତି । ଏଥିରୁ ସେମାନେ ମୁଖ୍ୟତଃ ପୁଷ୍ଟିସାର ବା ପ୍ରୋଟିନ ପାଆନ୍ତି; ଯାହାକି ସେମାନଙ୍କ ଶରୀରକୁ ହୃଷ୍ଟପୁଷ୍ଟ କରି ଗଠନ କରେ ଏବଂ ସେମାନଙ୍କୁ ଶକ୍ତି ଯୋଗାଏ ।

ଏବେ ତୁମମାନଙ୍କୁ ଅନ୍ୟ ଏକ ବିଷୟରେ କୁହାଯିବ । ତୁମେ ଆଖି ଖୋଲି ଚାହିଁଲେ ପଶୁ, ପକ୍ଷୀ, ବ୍ୟତୀତ ଆମ ପୃଥିବୀରେ ହଜାର ହଜାର ସବୁଜ ବୃକ୍ଷ, ଗଛ ଲତା, ଫଳ ଗଛ, ଫୁଲ ଗଛ ଦେଖୁଥିବ । ବାଡ଼ି ବଗିଚାରେ ବହୁ ଫୁଲ ଫଳଗଛ ନିଶ୍ଚୟ ଲଗାଉଥିବ । ଆଚ୍ଛା, ତୁମେ କହିଲ ଦେଖି ଗଛ କ'ଣ ଖାଇ ବଞ୍ଚେ । ତୁମେ ସଙ୍ଗେ ସଙ୍ଗେ ହୁଏତ ଉତ୍ତର ଦେବ ଗଛ ମାଟିରୁ ଲବଣ ସଂଗ୍ରହ କରି, ଜଳ ଗ୍ରହଣ କରି ନିଜର ଖାଦ୍ୟ ନିଜେ ପ୍ରସ୍ତୁତ କରେ ଏବଂ ଖାଇ ବଞ୍ଚେ ଯାହାକି ଆମେ ପ୍ରାଣୀମାନେ ନିଜେ କରିପାରୁନାହୁଁ ଓ ଖାଦ୍ୟ ପାଇଁ ଉଦ୍ଭିଦ ଉପରେ ସମ୍ପୂର୍ଣ୍ଣ ନିର୍ଭର କରୁ । ପୃଥିବୀ ପୃଷ୍ଠର ପ୍ରାୟ ସବୁ ଗଛ ନିଜେ ନିଜର ଖାଦ୍ୟ ପ୍ରସ୍ତୁତ କରନ୍ତି ଏବଂ ସେମାନଙ୍କ ଦ୍ୱାରା ପ୍ରସ୍ତୁତ ଖାଦ୍ୟ ଖାଇ ଆମେ ମାନବ ସମାଜ ବଞ୍ଚିରହୁ । ଥରେ ଭାବିଲ ଦେଖି, ଯଦି ଉଦ୍ଭିଦ ଜଗତ ନ ଥାନ୍ତା, ତୁମେ କିପରି ରହନ୍ତ, ଖାଆନ୍ତ କଅଣ, ଘର ତିଆରି କରନ୍ତ କିପରି । ଆଗରୁ ତ କୁହାଯାଇଛି, ମାଟିରୁ ଆମୋନିୟମ ଲବଣ ଓ ଅଙ୍ଗାରକାମ୍ଳ ବାୟୁମଣ୍ଡଳରୁ ନେଇ ସବୁଜକଣା ସାହାଯ୍ୟରେ ଗଛ ଖାଦ୍ୟ ପ୍ରସ୍ତୁତ କରିଥାଏ ଏବଂ ନିଜ ଦେହରେ ଖାଦ୍ୟ ସଞ୍ଚୟ କରି ରଖିଥାଏ ।

ମାତ୍ର ତୁମେ ହୁଏତ ଶୁଣି ଆଶ୍ଚର୍ଯ୍ୟ ହେବ ଯେ କେତେକ ଗଛ ଆମ ମାନଙ୍କପରି ବିଭିନ୍ନ ପ୍ରକାର କୀଟ ପତଙ୍ଗର ମାଂସ ଖାଆନ୍ତି । ଆମ୍ଭେ

ମାନେ ପିନା ଜଙ୍ଗଲରେ ବୁଲି ଶିକାର କରି ବିଭିନ୍ନ ପ୍ରାଣୀଙ୍କୁ ଧରି ମାରି ସେମାନଙ୍କର ମାଂସ ଖାଉ, ମାତ୍ର ଗଛମାନେ ତ ବୁଲି ପାରିବେ ନାହିଁ ! ସେମାନେ ଶିକାର କରନ୍ତି କପରି ଏବଂ ପୃଥିବୀ ପୃଷ୍ଠରେ ଥିବା ଅଧିକାଂଶ ଗଛ ମାଂସ ଖାଉ ନଥିବା ବେଳେ କେତେକ ଉଦ୍ଭିଦ କାହିଁକି ମାଂସ ଖାଆନ୍ତି, ଆସ ସେ ବିଷୟରେ ଆଲୋଚନା କରିବା । ମାଂସ ଖାଉଥିବା ଉଦ୍ଭିଦକୁ ମାଂସାଶୀ ଉଦ୍ଭିଦ କୁହାଯାଏ ।

ଏହି ଶ୍ରେଣୀର ଉଦ୍ଭିଦ ନିଜ ଦେହରେ ପ୍ରୋଟିନ ଜାତୀୟ ଖାଦ୍ୟ ପ୍ରସ୍ତୁତ କରିପାରୁ ନଥିବାରୁ ମୁଖ୍ୟତଃ ଛୋଟ ଛୋଟ ପୋକ, ଝିଣ୍ଟିକା,



କମଣ୍ଡଳୁ

ପ୍ରଭୃତି ପ୍ରାଣୀଙ୍କୁ ଧରି ସେମାନଙ୍କ ମାଂସରୁ ପ୍ରୋଟିନ ଗ୍ରହଣ କରିଥାନ୍ତି । ଏମାନେ ଏହି ପ୍ରାଣୀମାନଙ୍କୁ ନିଜ ଆଡ଼କୁ ଆକୃଷ୍ଟ କରିବା ପାଇଁ ନିଜ ଦେହରେ ବିଭିନ୍ନ ପ୍ରକାର ସ୍ୱତନ୍ତ୍ର ଧରଣର ଅଙ୍ଗ 'ସୃଷ୍ଟି କରିଥାନ୍ତି ।

ଗୃଣ ପ୍ରକାରର ଏହି ଶ୍ରେଣୀର ଉଦ୍ଭିଦ ଦେଖାଯାଇ ଥାନ୍ତି । ଆସାମର ଗାରୋ, ଖାସି ପାର୍ବତ୍ୟାଞ୍ଚଳରେ ଏକ ପ୍ରକାର ଗଛ ଦେଖାଯାଏ ଯାହାକୁ କମଣ୍ଡଳୁ ଗଛ କୁହାଯାଏ । ଏହାର ପତ୍ରର ଅଗ୍ରଭାଗ ଏକ ମାଠିଆ ସଦୃଶ ହୋଇଥାଏ ଏବଂ ଏହି ମାଠିଆ ମୁହଁରେ ଏକ ଢୋଡ଼ଣି ଲଗି-ଥାଏ (ଚିତ୍ର ଦେଖ) । ଏହି ପତ୍ରର ସୁଗନ୍ଧରେ କୀଟ ପତଙ୍ଗ ମାନେ ଆକୃଷ୍ଟ ହୋଇ ଏହି ମାଠିଆ ମୁହଁ ମଧ୍ୟକୁ ପଶିଗଲେ ମାଠିଆ ମୁହଁରେ ଥିବା ଢୋଡ଼ଣି ଆପେ ଆପେ ବନ୍ଦ ହୋଇଯାଏ ଏବଂ ପତଙ୍ଗଟି ତା ଭିତରେ ରହିଯାଏ । ମାଠିଆ ମଧ୍ୟରେ ଥିବା ରସାତ୍ମକ ପଦାର୍ଥଦ୍ୱାରା ଏହି ପୋକ ଗଛ ଦ୍ୱାରା ହଜମ ହୋଇଯାଏ । ସେହିପରି ପାଣି ମଧ୍ୟରେ ଭାସୁଥିବା ଅଟ୍ରିକୁଲରିଆ ନାମକ ଏକ ପ୍ରକାର ଉଦ୍ଭିଦର ପତ୍ର ଦୁଇ ଫାଳ ହୋଇଥାଏ ଏବଂ ଏଥିରେ କେତେକ କଣ୍ଟା ସୃଷ୍ଟି ହୋଇଥାଏ । ଛୋଟ କୀଟପତଙ୍ଗ ଏହାର ରଙ୍ଗରେ ଆକୃଷ୍ଟ ହୋଇ ଏହା ଉପରେ ବସିଲେ ପତ୍ର ଆପେ ଆପେ ବନ୍ଦ ହୋଇଯାଏ ଏବଂ ପତଙ୍ଗଟି ତା ଭିତରେ ରହି ହଜମ ହୋଇଯାଏ । ସେହିପରି ଆମେରିକାରେ ଦେଖା ଯାଉଥିବା



ଡାୟୋନିଆ

ଡାଏନୋରା ନାମକ ଏକ ଉଦ୍ଭିଦ ମଧ୍ୟ ତାର ପତ୍ରକୁ ଦୁଇ ଭାଗରେ

ବିଭକ୍ତ କରି କୀଟ ପତଙ୍ଗ ମାନଙ୍କୁ ତା ଆଡ଼କୁ ଆକୃଷ୍ଟ କରି ପରିଣାମରେ ନିଜ ପତ୍ରରେ ଥିବା ଅଠାରେ ଧରି ରଖି ଖାଇଦିଏ । ସେହିପରି ଭାରତର ବିଭିନ୍ନ ଅଞ୍ଚଳରେ ଦେଖାଯାଉଥିବା ସନଡ଼ିଉ ନାମକ ଏକ ଉଦ୍ଭିଦ ଦେହରେ ବହୁ ଲୋମଣ ଶୁଣ୍ଢ ବାହାରିଥାଏ ଏବଂ ପ୍ରତ୍ୟେକ ଶୁଣ୍ଢର ଅଗ୍ରଭାଗରେ ଏକ ଅଠାଳିଆ ସୁନ୍ଦର ଦିଶୁଥିବା ତରଳ ପଦାର୍ଥ ଥାଏ । ସୂର୍ଯ୍ୟ ରଶ୍ମିରେ ଏହା ଚକ୍ ଚକ୍ କରୁଥାଏ । କୀଟ ପତଙ୍ଗମାନେ ଏହାର ରଙ୍ଗରେ ଆକୃଷ୍ଟ ହୋଇ ଆସି ଏହା ଦେହରେ ବସନ୍ତି, ମାତ୍ର ବସିବା ମାତ୍ରେ ଅଠାଦ୍ୱାରା ଏମାନେ ଲାଗିଯାନ୍ତି ଏବଂ ଚାରିଆଡ଼ୁ ଏହି ଗଛର ଶୁଣ୍ଢ ବାହାରି ପତଙ୍ଗକୁ ଘେରିଯାଇ ଧରି ରଖନ୍ତି । ଏହା ଗଛର ଆହାର ରୂପେ ବ୍ୟବହୃତ ହୁଏ । ଏହା ବ୍ୟତୀତ ଅନ୍ୟାନ୍ୟ କେତେକ ଗଛ ଅଛନ୍ତି ଯେଉଁମାନେ ଭିନ୍ନ ଭିନ୍ନ ଉପାୟରେ କୀଟପତଙ୍ଗଙ୍କୁ ଧରି ସେମାନଙ୍କର ମାଂସ ଖାଇଥାନ୍ତି ।

ତେଣୁ ତୁମ୍ଭେମାନେ, କେତେକ ଗଛ କିପରି କୁଆଡ଼େ ଶିକାର କରିବାକୁ ନଯାଇ ନିଜେ ଗୋଟିଏ ସ୍ଥାନରେ ରହି ଶିକାର କରି ମାଂସ ଖାଏ ସେ ବିଷୟରେ ତ ଜାଣିଲ ! ବଡ଼ ହେଲେ ଏ ବିଷୟରେ ଅଧିକ ଜାଣିବାକୁ ଚେଷ୍ଟା କରିବ ।



# ବିଚିତ୍ର ଜୀବ ପ୍ଲାଟିପସ୍

ପୃଥିବୀର ସୃଷ୍ଟି ହେବା ପରେ ବିଭିନ୍ନ ପ୍ରକାର ଅବସ୍ଥା ଓ ଯୁଗ ମଧ୍ୟ ଦେଇ ଗତି କରିଥିଲା । ଉତପ୍ତ ପୃଥିବୀ କ୍ରମେ ଶୀତଳ ହେବା ପରେ ଏଥିରେ ବିଭିନ୍ନ ପ୍ରକାର ସରୀସୃପ ଜନ୍ମହେଲେ । ସରୀସୃପମାନେ ବହୁ ବର୍ଷ ଧରି ପୃଥିବୀ ପୃଷ୍ଠରେ ବାସ କଲେ । ମାତ୍ର ଏହି ଯୁଗର ଶେଷ-ଭାଗରେ ପୃଥିବୀର ବାୟୁମଣ୍ଡଳ ଅତ୍ୟଧିକ ଥଣ୍ଡା ହେବାକୁ ଲାଗିଲା ଓ ଶୁଷ୍କ ହୋଇଗଲା । ସରୀସୃପମାନଙ୍କ ପାଇଁ ଖାଦ୍ୟର ଘୋର ଅଭାବ ଦେଖାଦେଲା ଏବଂ ସେମାନେ ଅତ୍ୟଧିକ ଶୀତ ସହ୍ୟ କରି ନପାରି ଜୀବନ ରକ୍ଷା କରିବାରେ ବହୁ ବାଧା ବିଘ୍ନର ସମ୍ମୁଖୀନ ହେଲେ । ଏହାପରେ ସ୍ତନ୍ୟପାୟୀ ପ୍ରାଣୀମାନେ ପୃଥିବୀ ପୃଷ୍ଠରେ ଜନ୍ମନେଲେ । ସେମାନେ ମଧ୍ୟ ସରୀସୃପ ମାନଙ୍କ ଅଣ୍ଡାକୁ ଚୋରାଇ ଖାଇଦେଲେ । କେତେକ ସରୀସୃପ ଅତ୍ୟଧିକ ଥଣ୍ଡାରୁ ନିଜକୁ ରକ୍ଷା କରିବାକୁ ସେମାନଙ୍କ ଦେହରେ କୋମଳ ଲୋମ ସୃଷ୍ଟି କଲେ । ଏବଂ ସେମାନଙ୍କ ଠାରୁ ହିଁ ପ୍ରଥମ ସ୍ତନ୍ୟପାୟୀ ପ୍ରାଣୀର ସୃଷ୍ଟି ହେଲା ବୋଲି ଅନୁମାନ କରାଯାଏ । ତେଣୁ ଯେତେ-ବେଳେ ସରୀସୃପମାନେ ପୃଥିବୀର ଏହି ପ୍ରକାର ପରିବର୍ତ୍ତିତ ପରିସ୍ଥିତିର ସମ୍ମୁଖୀନ ହୋଇ ନପାରିଲେ ସେତେବେଳେ ସ୍ତନ୍ୟପାୟୀ ପ୍ରାଣୀମାନେ ଏ ପ୍ରକାର ପରିସ୍ଥିତିକୁ ସମ୍ଭାଳି ନେଇ ପୃଥିବୀ ପୃଷ୍ଠରେ ଉଭା ହେଲେ ।

ପୂର୍ବକାଳରୁ ବହୁ ପ୍ରକାର ଅଦ୍ଭୁତ ଜୀବ ଆମ ପୃଥିବୀ ପୃଷ୍ଠରେ ଦେଖା ଦେଇଛନ୍ତି । କେତେକ ପୁରାତନ ଅଦ୍ଭୁତ ଜୀବ ମଧ୍ୟ ଆଜିପାଏ ପୃଥିବୀ ପୃଷ୍ଠରେ ବଞ୍ଚିରହିଛନ୍ତି । ଏହି ଜୀବମାନେ ଦେଖିବାକୁ ଯେପରି ଅଦ୍ଭୁତ ପ୍ରକାରର ସେମାନଙ୍କର ଆହାର, ବ୍ୟବହାର, ଆକୃତି, ଖାଦ୍ୟ-ସଂଗ୍ରହ ପ୍ରଣାଳୀ ମଧ୍ୟ ଆଶ୍ଚର୍ଯ୍ୟଜନକ । ସେମାନେ ସରୀସୃପ ନୁହନ୍ତି ବା ସ୍ତନ୍ୟପାୟୀ ନୁହନ୍ତି, ପଶୁ ନୁହନ୍ତି ବା ପକ୍ଷୀ ନୁହନ୍ତି । ଅଷ୍ଟ୍ରେଲିଆର ବିଭିନ୍ନ ଅଞ୍ଚଳରେ ତଥା ଟାସମାନିଆ ପ୍ରଭୃତି ଦେଶରେ ଦେଖାଯାଉଥିବା



ପ୍ଲାଟିପସ୍

ପଶୁପକ୍ଷୀ ଜୀବ ପ୍ଲାଟିପସ୍ ଏହି ଶ୍ରେଣୀର ଏକ ପୁରାତନ ଜୀବ ଅଟେ । ଏହାକୁ ପୃଥିବୀର ଆଶ୍ଚର୍ଯ୍ୟତମ ସ୍ତନ୍ୟପାୟୀ ପ୍ରାଣୀ କୁହାଯାଏ । ଏହି ଜୀବ ଉଭୟ ଜଳଭାଗ ଓ ସ୍ଥଳଭାଗରେ ରହିପାରେ । ଏହାର ଦେହର ଉପରଭାଗ ବହଳ ଚର୍ମ ବା ଲୋମ ଦ୍ୱାରା ଆବୃତ ହୋଇ ରହିଛି । ଏହି ପ୍ରାଣୀର ଲମ୍ବ ପ୍ରାୟ ଦୁଇଫୁଟ ଏବଂ ଲାଞ୍ଜର ଲମ୍ବ ପ୍ରାୟ ୭ ଇଞ୍ଚ । ଏହା ପୃଥିବୀର ଏକମାତ୍ର ସ୍ତନ୍ୟପାୟୀ ଜୀବ ଯାହାକି ସରୀସୃପ ଓ ପକ୍ଷୀମାନଙ୍କ ପରି ଅଣ୍ଡା ଦିଏ । ସ୍ଥଳଭାଗରେ କୋକଶିଆଳୀ ପରି ଗାତ କରି ସେ ଏହି ବିଭିନ୍ନ ଶାଖାରେ ବିଭକ୍ତ ବିରାଟ ଗାତ ଭିତରେ ରହିଥାଏ । ଏହି ଜୀବ ପକ୍ଷୀପରି ଅଣ୍ଡାଦେଲେ ମଧ୍ୟ ସ୍ତନ୍ୟପାୟୀ ପ୍ରାଣୀପରି ନିଜର ଛୁଆକୁ କ୍ଷୀର ଖୁଆଇ ବଞ୍ଚାଇଥାଏ ଏବଂ ଶିଶୁକୁ କଙ୍ଗାରୁ ପରି ତା ପେଟତଳେ ଥିବା ଏକ ଥଳି ମଧ୍ୟରେ ରଖିଥାଏ । ଏହାର ୪ ଗୋଟି ଚେପଟା ଗୋଡ଼ । ବତକ ହଂସର ଗୋଡ଼ ପରି ଏହାର ଗୋଡ଼ର ଆଙ୍ଗୁଠି ଗୁଡ଼ିକ ଏକ ପରଦା ଦ୍ୱାରା ସଂଯୁକ୍ତ ହୋଇ ଏହାକୁ ପାଣିରେ ପହଁରିବାରେ ସାହାଯ୍ୟ କରିଥାଏ । ସବୁଠାରୁ ଆଶ୍ଚର୍ଯ୍ୟର ବିଷୟ ହେଉଛି ଏହାର ଥଣ୍ଟ । ବତକ, ହଂସ ପରି ଏହି ପ୍ରାଣୀର ଏକ ଚେପଟା

ଅଛି ଅଛି । ଏହି ଅଙ୍ଗର ଦୁଇପାଖରେ ଥିବା ଦୁଇଟି ନାକ ପୁଡ଼ା ରନ୍ଧ୍ର ସହଜରେ ବାସନା ଅନୁଭବ କରିପାରେ । ପଛ ଗୋଡ଼ରେ ଥିବା ତୀକ୍ଷ୍ଣ ନଖଦ୍ୱାରା ଏହା ଶତ୍ରୁ କବଳରୁ ନିଜକୁ ରକ୍ଷାକରେ । ସାଧାରଣତଃ ନଦୀ, ହ୍ରଦ, ପୋଖରୀ କୂଳରେ ଏହା ମାଟି ମଧ୍ୟରେ ଗାତ କରି ରହି- ଥାଏ । ଦିନରେ ସାଧାରଣତଃ ଗାତ ମଧ୍ୟରେ ଏହି ପ୍ରାଣୀ ଲୁଚି ରହିଥାଏ । ରାତି ହେଲେ ପଦାକୁ ବାହାରି ଖାଦ୍ୟ ଯୋଗାଡ଼କରେ । ଏହା ସାଧା- ରଣତଃ ଛୋଟ ମାଛ, ପୋକ ଜୋକ, ଏବଂ ପାଣି କାଦୁଅରୁ ଗେଣ୍ଡା ପ୍ରଭୃତି ଧରି ଖାଏ । ସ୍ତ୍ରୀ ପ୍ଲାଟିପସ୍ ଏକାଥରକେ ଗାତ ମଧ୍ୟରେ ଦୁଇଟି ଅଣ୍ଡା ଦେଇଥାଏ । ଏହି ଅଣ୍ଡା ଗୁଡ଼ିକର ଆକୃତି ଏକ ଇଞ୍ଚର ଏକ ତୃତୀୟାଂଶ ହୋଇଥାଏ ଏବଂ ଏହାର ରଙ୍ଗ ଧଳା । ଏକ ମଜଭୁତ ଖୋଳପା ମଧ୍ୟରେ ଏହା ରହିଥାଏ । ମାଆ ଏହି ଅଣ୍ଡାକୁ ପକ୍ଷୀମାନଙ୍କ ପରି ଉଷୁମାଇ ଏଥିରୁ ଛୁଆ ବାହାର କରେ । ପ୍ରଥମାବସ୍ଥାରେ ଛୁଆ ଗୁଡ଼ିକର ଆଖି ଖୋଲି ନଥାଏ ଏବଂ ଏମାନେ ଏକ ପ୍ରକାର ଅନ୍ଧ ହୋଇ ଏହି ଗାତ ମଧ୍ୟରେ ପ୍ରାୟ ୪ ମାସ ଯାଏ ରହିଥାନ୍ତି ଏବଂ ମା'ର କ୍ଷୀର ଖାଇ ବଞ୍ଚିଥାନ୍ତି । ମାଈ ପ୍ଲାଟିପସର ପେଟତଳେ ଛୋଟ ଛୋଟ କଣା ଥାଏ ଯେଉଁଥିରୁ କ୍ଷୀର ବାହାରେ । ଶିଶୁ ପ୍ଲାଟିପସର ଦାନ୍ତ ଉଠି ନିଜେ ଖାଦ୍ୟ ସଂଗ୍ରହ କରିବାକୁ ସକ୍ଷମ ହେବା ପରେ ବାହାରକୁ ଆସି ନିଜର ଖାଦ୍ୟ ଯୋଗାଡ଼ କରେ ।

ଏହି ପ୍ରାଣୀକୁ ଚିଡ଼ିଆଖାନାରେ ରଖିବା ସମ୍ଭବ ନୁହେଁ । ସ୍ୱତନ୍ତ୍ର ରୂପେ ନିର୍ମିତ ଏକ ଘର ମଧ୍ୟରେ ଆମେରିକାର ନିଉୟର୍କ ଚିଡ଼ିଆଖାନାରେ ଏହି ପ୍ରାଣୀକୁ କିଛି କାଳ ପାଇଁ ରଖାଯାଇଥିଲା । ଏହି ଅଦ୍ଭୁତ ଜୀବ ଜଳଚର ପକ୍ଷୀ, ସରୀସୃପ ଓ ସ୍ତନ୍ୟପାୟୀ ପ୍ରାଣୀର ଚରିତ୍ରର ଅଧିକାରୀ । ଏହି ପ୍ରକାର ବିଚିତ୍ର ଜୀବର ରକ୍ଷଣାବେକ୍ଷଣ ପାଇଁ ବର୍ତ୍ତମାନ ଚେଷ୍ଟା ଅବ୍ୟାହତ ରହିଛି ।



# ଉଡ଼ନ୍ତା ମାଛ

ତୁମେମାନେ ବିଭିନ୍ନ ପ୍ରକାର ପକ୍ଷୀ ଦେଖିଥିବ । ପକ୍ଷୀ ଦଳ ଦଳ ହୋଇ ଲକ୍ଷ ଲକ୍ଷ ସଂଖ୍ୟାରେ ଆମ ପୃଥିବୀ ପୃଷ୍ଠରେ ବାସ କରି ପୃଥିବୀ ପୃଷ୍ଠର ଶୋଭା ବଢ଼ାଇବା ସଙ୍ଗେ ସଙ୍ଗେ ଆମ ମାନଙ୍କର ବହୁ ଉପକାର କରିଥାନ୍ତି । ସେମାନଙ୍କର ସୁନ୍ଦର ରୂପ ଦେଖି ତୁମେମାନେ ଆକୃଷ୍ଟ ହୁଅ । କେତେକଙ୍କୁ ଆଣି ପୋଷା ମନାଇ ଘରେ ରଖ । ଶୁଆ, ଶାରୀ ମଣିଷ ପରି କଥା କହି ତୁମକୁ ରାମନାମ ଶିଖାନ୍ତି । ରାତି ପାହିଲେ ଦଳ ଦଳ ଶୁଆ ଆକାଶରେ ଉଡ଼ିବୁଲି ରବଦେଇ ତୁମକୁ ନିଦରୁ ଉଠାନ୍ତି ଏବଂ ତୁମର ଅଇଠା ଖାଇ ଘର ବାହାର ସଫା ରଖନ୍ତି । ଆମ ପୃଥିବୀ ପୃଷ୍ଠରେ ଯଦି ପକ୍ଷୀ ନଥାନ୍ତେ ତେବେ କିପରି ନୀରସ ଲାଗନ୍ତା ଭାବିଲ ଦେଖି । ତୁମେମାନେ ମଧ୍ୟ କେତେକ ପକ୍ଷୀଙ୍କର ସୁସ୍ୱାଦୁ ମାଂସ ଖାଇବାକୁ ଭଲପାଅ । ଜଣାଯାଇଛି ଯେ ପୃଥିବୀ ପୃଷ୍ଠରେ ପ୍ରାୟ ୩୪ ହଜାରରୁ ଅଧିକ ଜାତିର ପକ୍ଷୀ ଅଛନ୍ତି । ଆମ ଭାରତରେ ୧୨ ହଜାର ପ୍ରକାରର ପକ୍ଷୀ ଅଛନ୍ତି । ପକ୍ଷୀମାନଙ୍କର ବିଶେଷତ୍ୱ ହେଉଛି ଯେ ସେମାନେ ଡେଣା ସାହାଯ୍ୟରେ ଆକାଶରେ ଉଡ଼ି ପାରନ୍ତି । ପକ୍ଷୀ ଆକାଶରେ ମନଖୁସିରେ ଡେଣା ମେଲାଇ ଉଡ଼ି ଗଲାବେଳେ ତାଙ୍କୁ ଦେଖି ତୁମର ଭାରି ଈର୍ଷା ହୁଏ । ତୁମେ ସବୁ ଭାବ ତୁମର ଡେଣା ଯଦି ଥାଆନ୍ତା ତେବେ ତୁମେ ଟିକେ ଯାଇ ଆକାଶ ଆଡ଼େ ବୁଲି ଆସନ୍ତ । ଆକାଶ ଉପରୁ ପୃଥିବୀ କିପରି ଦିଶୁଛି ଦେଖିପାରନ୍ତ । ତୁମର ଡେଣା ନଥିଲେ ମଧ୍ୟ ତୁମେ ଉଡ଼ାଜାହାଜ ସାହାଯ୍ୟରେ ଆକାଶକୁ ଯାଇ ସେଠାରୁ ପୃଥିବୀ ପୃଷ୍ଠର ନଦୀ, ନାଳ, ବଣ, ବିଲ କିପରି ଏବେ ଦେଖିପାରିବ । ରକେଟ ସାହାଯ୍ୟରେ ମଧ୍ୟ ତୁମେ ଇଚ୍ଛାକଲେ ମହାଶୂନ୍ୟକୁ ଯାଇ ପାରିବ । ଚନ୍ଦ୍ର ପୃଷ୍ଠକୁ ଯାତ୍ରାକରି ସେଠାକାର ଅନୁଭୂତି ନିଜେ ଅନୁଭବ କରିପାରିବ । ଆଜି କାଲି ବିଜ୍ଞାନ ଯୁଗରେ ଏସବୁ ସମ୍ଭବ ହେଲାଣି । ମାତ୍ର ପକ୍ଷୀ ଯେପରି ପ୍ରକୃତିଦତ୍ତ ଡେଣା ସାହାଯ୍ୟରେ ଯୁଆଡ଼େ ଯେତେବେଳେ ଇଚ୍ଛା ଉଡ଼ିପାରୁଛି, ଆମେ ସେପରି ଉଡ଼ିପାରିବା ନାହିଁ ।



ଉଡ଼ନ୍ତା ମାଛ

ତୁମେମାନେ ନିଶ୍ଚୟ ମାଛ ଦେଖିଥିବ । ମାଛ ଆମ୍ଭମାନଙ୍କର ଏକ ପ୍ରିୟ ଖାଦ୍ୟ । ଏହା ସାଧାରଣତଃ ଜଳରେ ବାସକରେ । ପୃଥିବୀ ପୃଷ୍ଠରେ ପ୍ରାୟ ୨୦ ହଜାରରୁ ଅଧିକ ପ୍ରକାରର ମାଛ ଦେଖାଯା'ନ୍ତି । ପାଣି ଭିତରୁ ମାଛକୁ ବାହାରକୁ ନେଇ ଆସିଲେ ଏହା ଅଣନିଶ୍ୱାସୀ ହୋଇ ମରିଯାଏ । ଏହାର ଦେହରେ ଶକ୍‌କଣ, ଚେପ୍‌ଟା, ଗୋଲାକାର କାତି ଲାଗିରହି ଏକ ପ୍ରକାର ଲାଳୁଆ ପଦାର୍ଥ ସବୁବେଳେ କାତିରୁ ବାହାରୁଥାଏ ଏବଂ ଏହାର ଶରୀରକୁ ଲାଳୁଆ କରି ରଖିଥାଏ । ସେଥି-ପାଇଁ ମାଛକୁ ଧରିଲେ ଏହା ତୁମ ହାତରୁ ଖସିଯାଏ । ଆମେ ମାଛକୁ ସବୁବେଳେ ପାଣିରେ ଥିବାର ଦେଖିଛୁ ମାତ୍ର ସମୁଦ୍ରରେ କେତେକ ଜାତିର ମାଛ ଅଛନ୍ତି ଯେଉଁମାନେ ପକ୍ଷୀପରି ଆକାଶରେ ଉଡ଼ିପାରନ୍ତି, ସେ ବିଷୟ ତୁମ୍ଭେମାନେ ଜାଣିଛ କି ? ଏହି ଶ୍ରେଣୀର କେତେକ ମାଛ ଜଳସ୍ତରରୁ ପ୍ରାୟ ୫୦ ରୁ ୧୦୦ ଫୁଟ ଉଚ୍ଚ ଯାଏ ଉଡ଼ିଯାଇ ପୁଣି ତଳକୁ ଖସି ଆସନ୍ତି । ପୃଥିବୀରେ ପ୍ରାୟ ୭୦ ପ୍ରକାରର ଉଡ଼ନ୍ତା ମାଛ ଅଛନ୍ତି । ଆଟଲାଣ୍ଟିକ ମହାସାଗର, ଭାରତ ମହାସାଗର, ଭୂମଧ୍ୟସାଗର, ପ୍ରଶାନ୍ତ ମହାସାଗରରେ ଏହି ପ୍ରକାର ଉଡନ୍ତା ମାଛ ସାଧାରଣତଃ ଦେଖା-

ଯାଆନ୍ତି । ଏହା ବ୍ୟତୀତ ଦକ୍ଷିଣ ଆମେରିକା, ଆଫ୍ରିକା ମହାଦେଶର କେତେକ ନଦୀ, ହ୍ରଦରେ ଏହି ପ୍ରକାର ଉଡ଼ନ୍ତା ମାଛ ମଧ୍ୟ ଦେଖା-ଯାଆନ୍ତି । ତେବେ ମାଛମାନେ ଉଡ଼ନ୍ତି କିପରି ? ପକ୍ଷୀମାନଙ୍କ ପରି ଏମାନଙ୍କର ଉଡ଼ିବାପାଇଁ କ'ଣ ଡେଣା ଅଛି ? ଏମାନଙ୍କର ପକ୍ଷୀମାନଙ୍କ ପରି ଡେଣା ନାହିଁ ସତ ମାତ୍ର ଏହି ଶ୍ରେଣୀର ମାଛଙ୍କର ମୀନପକ୍ଷ ବା ଡେଣା ବହୁତ ବଡ଼ ହୋଇଥାଏ ଏବଂ ଉଡ଼ିବାରେ ଏମାନଙ୍କୁ ସାହାଯ୍ୟ କରେ । କେତେକ ମାଛଙ୍କର ଦୁଇହଳ ମୀନପକ୍ଷ ବଡ଼ ହୋଇଥାଏ । ମାତ୍ର ପକ୍ଷୀମାନେ ଯେପରି ଡେଣାକୁ ହଲାଇ ଉଡ଼ିପାରନ୍ତି, ଏମାନେ ସେପରି କରିପାରନ୍ତି ନାହିଁ । ଏହି ଜାତିର ମାଛମାନଙ୍କର ଡେଣା ଉଡ଼ାଜାହାଜର ଡେଣା ପରି ସବୁବେଳେ ସ୍ଥିର ହୋଇ ରହିଥାଏ । ମାତ୍ର ଏମାନେ ମାଛକୁ ଆକାଶରେ ଗ୍ଲାଇଡ଼ର ପରି ଉଡ଼ିବାରେ ସାହାଯ୍ୟ କରିଥାନ୍ତି । ମାଛ ଥରେ ଆକାଶକୁ ଉଡ଼ିଗଲେ ଏହି ମୀନପକ୍ଷ ଦ୍ୱାରା ଗ୍ଲାଇଡ଼ର ପରି ଆକାଶରେ ଉଡ଼ିବୁଲନ୍ତି । ପାଣି ମଧ୍ୟରୁ ବାୟୁମଣ୍ଡଳକୁ ଉଠିବା ବେଳେ ଏମାନେ ଲାଞ୍ଜ ସାହାଯ୍ୟରେ ଜଳସ୍ତର ଉପରେ ଏତେ ଜୋରରେ ଚୂପ ଦିଅନ୍ତି ଯାହା ଫଳରେ ସେମାନଙ୍କ ଶରୀର ଆପେ ଆପେ ଆକାଶକୁ ଉଠିଯାଏ । ଥରେ କିଛି ବାଟ ଉଠିଯାଇ ପୁଣି ତଳକୁ ଖସିଆସି ପୁନର୍ବାର ମଝି ବାଟରୁ ଉପରକୁ ମଧ୍ୟ କେତେକ ଶ୍ରେଣୀର ମାଛ ଉଠିଯାଇପାରନ୍ତି । ପାଣି ଉପରେ ବାୟୁମଣ୍ଡଳରେ ଏମାନେ ଖୁବ୍ ବେଶିରେ ଅଧମିନଟ୍ ଯାଏ ରହିପାରନ୍ତି । ଏମାନେ କାହିଁକି ଆକାଶକୁ ଉଡ଼ିଯାଆନ୍ତି ତାର କାରଣ ସଠିକ ଭାବେ ଜଣା ପଡ଼ି ନଥିଲେ ମଧ୍ୟ ଶତ୍ରୁ ମାଛମାନଙ୍କ ଆକ୍ରମଣରୁ ନିଜକୁ ରକ୍ଷା କରିବାକୁ କେତେକ ଆକାଶକୁ ଉଠିଥାନ୍ତି । ଆଉ କେତେକ ସମୁଦ୍ରରେ ଜାହାଜର ଶବ୍ଦ ଓ ଆଲୋକମାଳା ଦେଖି ମଧ୍ୟ ଶୂନ୍ୟକୁ ଉଠିଥାଆନ୍ତି ।

ତୁମେମାନେ ବଡ଼ ହେଲେ ଯଦି କେବେ ଜାହାଜରେ ଜଳ-ପଥରେ ଯାତ୍ରାକର ତେବେ ଏହି ଶ୍ରେଣୀର ମାଛ ମାନଙ୍କୁ ଦେଖିବାକୁ କେବେ ଭୁଲିବ ନାହିଁ ।



# ମାଟି ନ ଥାଇ ଗଛ ଓ ଗୃଷ

ଆମ ପୃଥିବୀ ପୃଷ୍ଠରେ ଥିବା ଜୀବନ୍ତ ପଦାର୍ଥକୁ ଦୁଇଭାଗରେ ବିଭକ୍ତ କରାଯାଇଛି । ତାହା ହେଲା ଉଦ୍ଭିଦ ଓ ପ୍ରାଣୀ । ତୁମେମାନେ ଆଖିଖୋଲିଲେ ଶହ ଶହ ନାନା ଜାତିର ଉଦ୍ଭିଦ ତୁମମାନଙ୍କ ଆଖିରେ ପଡ଼େ । ବାଡ଼ି ବଗିଚାରେ ଥିବା ଫୁଲ ଓ ଫଳ ଗଛରେ ଯେତେବେଳେ ସୁନ୍ଦର ସୁନ୍ଦର ଫୁଲଫଳ ଭରିଯାଏ ତାହା କେଡ଼େ ସୁନ୍ଦର ଦିଶେ । ଗାଁ ମୁଣ୍ଡରୁ ଦିଗବଳୟ ଯାଏ ଲମ୍ବି ରହିଥିବା ସବୁଜ ଶସ୍ୟକ୍ଷେତର ସବୁଜ ଶୋଭାରାଶି ସମସ୍ତଙ୍କୁ ଆନନ୍ଦ ଦିଏ । ତୁମେମାନେ ତ କେତେ ଫୁଲ ଫଳ ଗଛ ନିଜ ହାତରେ ବାଡ଼ି ବଗିଚାରେ ଲଗାଉଥିବ ! ପୃଥିବୀ ପୃଷ୍ଠର ଯେଉଁ ଆଡ଼କୁ ଗଲେ ସେଠାରେ ଗଛ ବୃକ୍ଷ ତୁମେମାନେ ନିଶ୍ଚୟ ଦେଖିବାକୁ ପାଇବ । ଏପରିକି ମହାସାଗର ବକ୍ଷରେ ତଥା ବିସ୍ତୀର୍ଣ୍ଣ ମରୁଭୂମିରେ ମଧ୍ୟ ବିଭିନ୍ନ ପ୍ରକାର ଉଦ୍ଭିଦ ଦେଖିବାକୁ ମିଳିଥାଏ । ଏହି ଉଦ୍ଭିଦ ଜଗତ ଆମ ପ୍ରାଣୀମାନଙ୍କୁ ଖାଦ୍ୟ, ବସ୍ତ୍ର ସବୁ କିଛି ଯୋଗାଇଥାଏ । ଉଦ୍ଭିଦ ଜଗତ ବ୍ୟତୀତ ପ୍ରାଣୀମାନଙ୍କର ତିଷ୍ଠି ରହିବା ଅସମ୍ଭବ । ତୁମମାନଙ୍କୁ ଯଦି ପଚରାଯାଏ ଯେ ଗଛ ସବୁ କେଉଁଠାରେ ବଢ଼ିଥାଏ, ତୁମେମାନେ ନିଶ୍ଚୟ କହିବ ପୃଥିବୀ ପୃଷ୍ଠର ମାଟି, ବାଲି, ବିଭିନ୍ନ ପାହାଡ଼ ପର୍ବତ ଉପରର ମୃତ୍ତିକା ଦେହରେ ଗଛ ସବୁ ବଢ଼ିଥାନ୍ତି । ପୃଥିବୀର ସବୁ ଅଞ୍ଚଳରେ ଗଛ ସାଧାରଣତଃ ମାଟି ଦେହରେ ହିଁ ବଢ଼ିଥାଏ । ସେଇଥିପାଇଁ କୃଷୀମାନେ ମାଟିକୁ ଫସଲର ମା' ବୋଲି କହିଥାନ୍ତି । ମାଟି ବ୍ୟତୀତ ଗଛ ବଢ଼ିବା, ଫସଲ ଉତ୍ପାଦିତ ହେବା କେହି କେବେ କଳ୍ପନା କରି ପାରେ ନାହିଁ । ମାତ୍ର ଏବେ ଆଜିର ବିଜ୍ଞାନ ଯୁଗରେ ମାଟି ବ୍ୟତୀତ ଗଛ ବଢ଼ିପାରୁଛି ଏବଂ ମାଟିରେ ବଢ଼ୁଥିବା ଗଛଠାରୁ ବିନା ମାଟିରେ ବଢ଼ୁଥିବା ଗଛରୁ ବହୁତ ଅଧିକ ଫଳ, ଶସ୍ୟ ମିଳୁଛି, ଏ ବିଷୟରେ ତୁମେମାନେ କିଛି ଜାଣିଛ କି ? ଆସ ମାଟି ନଥାଇ କିପରି ଗଛ ବଢ଼ି ଫଳ ଫଳୁଛି ସେ ବିଷୟରେ ଆଲୋଚନା କରିବା ।

ତୁମ୍ଭେମାନେ ସମସ୍ତେ ଜାଣ ଯେ ଆମ ପୃଥିବୀ ପୃଷ୍ଠର ୪ ଭାଗରୁ ୩ ଭାଗ ଜଳଭାଗ ବାକି ଏକ ଭାଗ ସ୍ଥଳଭାଗ । ଏହି ଏକଭାଗ ସ୍ଥଳଭାଗ ମଧ୍ୟରୁ ପୁଣି ଅଧିକାଂଶ ଅଞ୍ଚଳ ପାହାଡ଼ ପର୍ବତ, ମରୁଭୂମି, ବଣ ଜଙ୍ଗଲ, ନଦୀ ନାଳରେ ପରିପୂର୍ଣ୍ଣ ଓ କେତେକ ଅଞ୍ଚଳ ଫସଲ ଉତ୍ପାଦନ ପାଇଁ ଅନୁପଯୁକ୍ତ । ହିସାବ କରି ଦେଖାଯାଇଛି ଯେ ଆମ ପୃଥିବୀ ପୃଷ୍ଠର ସମଗ୍ର ଭୂଭାଗର ମାତ୍ର ଶତକଡ଼ା ୧୧ ଭାଗ ଭୂଭାଗରେ କୃଷି ବାସ କାର୍ଯ୍ୟ ହୁଏ । ଏହି ୧୧ ଭାଗ ଅଞ୍ଚଳ ଜମିରେ ହେଉଥିବା ଫସଲକୁ ଖାଇ ପୃଥିବୀର ପ୍ରାଣୀମାନେ ଓ ଆମେ ପ୍ରାୟ ୪୮୦ କୋଟି ମଣିଷ ବଞ୍ଚିରହୁ । ମାତ୍ର ଏବେ ବୈଜ୍ଞାନିକମାନେ କହିଲେଣି ଯେ ଆଉ ୧୩ ବର୍ଷ ପରେ ଏହି ଶତାବ୍ଦୀର ଶେଷ ବେଳକୁ ପୃଥିବୀର ଲୋକ ସଂଖ୍ୟା ୬୦୦ କୋଟି ହେବ ଏବଂ ଆମ ଭାରତର ଲୋକସଂଖ୍ୟା ମଧ୍ୟ ଏକଶହ କୋଟି ହେବ । ମାତ୍ର ଆଉ ତ ଅଧିକ ଜମିରେ କୃଷି ବାସ ହୋଇପାରିବ ନାହିଁ ! ଏତେ ଅଧିକ ସଂଖ୍ୟକ ଲୋକଙ୍କୁ କିପରି ଖାଦ୍ୟ ଯୋଗାଇବ ସେ ବିଷୟରେ ସାରା ପୃଥିବୀରେ ଏବେଠାରୁ ଭାବେଣି ପଡ଼ିଲାଣି । ତେଣୁ ଅଳ୍ପଜମିରୁ ଆମକୁ ଅଧିକ ଫସଲ ଅମଳ ନକଲେ ଏହି ଅବସ୍ଥାର ସମାଧାନ କରାଯାଇ ପାରିବ ନାହିଁ । ଏ ବିଷୟରେ ବହୁ ଚିନ୍ତା କରି, ଗବେଷଣା କରି ଜାପାନର ବୈଜ୍ଞାନିକମାନେ ଏକ ପ୍ରକାର ନୂଆ ପ୍ରଣାଳୀରେ କୃଷି କରିବା ବ୍ୟବସ୍ଥାର ଉଦ୍ଭାବନ କରିଛନ୍ତି । ଏହି ପ୍ରଣାଳୀରେ ପାହାଡ଼ ଉପରେ, ଅନୁର୍ବର ଅଞ୍ଚଳରେ, ମରୁଭୂମିରେ, ଯେ କୌଣସି ସ୍ଥାନରେ ଆମେ ଗଛ ପୋତି ସେଥିରୁ ଫଳ ହାସଲ କରି ପାରିବା । ଏଥିପାଇଁ ମାଟିର ଆଦୌ ଆବଶ୍ୟକତା ନାହିଁ । ଏହି ପ୍ରଣାଳୀକୁ "ଗବେଷଣାଗାର କୃଷି" ବା ବାଇଓଫାର୍ମିଂ୍ ବୋଲି କୁହାଯାଉଛି । ବିଶ୍ୱର ବିଭିନ୍ନ ଦେଶରେ ଏହି ପ୍ରଣାଳୀ ବର୍ତ୍ତମାନ ଲୋକମାନଙ୍କ ଦ୍ୱାରା ଆଦୃତ ହେବାରେ ଲାଗିଛି ।

ଏହି ପ୍ରକାର କୃଷି ପ୍ରଣାଳୀର ଉଦ୍ଭାବକ ହେଉଛନ୍ତି ଜାପାନର-ବୈଜ୍ଞାନିକ ମୁରାଇ କୁନିହିକୋ । ୧୯୬୨ ମସିହାରୁ ସେ ଏହା ଉପରେ ଗବେଷଣା ଚାଲୁରଖି କୃତକାର୍ଯ୍ୟ ହୋଇଛନ୍ତି । ସ୍ୱତନ୍ତ୍ର ଭାବରେ ନିର୍ମିତ

ଏକ କାଚଲଗା ଘରେ ବା ପଲିଥିନ ଘରେ ରସାୟନିକ ଲବଣ, ରସିରେ ସୋଡ଼ିୟମ ରଶ୍ମି ବ୍ୟବହାର କରାଯାଇ ଏହା ଚାଷ କରାଯାଉଛି । ଏଥି-



(ଏହି ଟମାଟୋ ଗଛରୁ ଛଅ ମାସ ମଧ୍ୟରେ ତେର ହଜାର ତିନିଶହ ବାରଟି ଟମାଟୋ ଉତ୍ପନ୍ନ ହୋଇଅଛି)

ପାଇଁ ମଞ୍ଜି ପୋତିବାକୁ ମାଟିର ଆବଶ୍ୟକତା ନାହିଁ । ସ୍ୱତନ୍ତ୍ର ସ୍ତମ୍ଭ ଉପରେ ମଞ୍ଜି ଗୁଡ଼ିକୁ ରଖାଯାଇ ଏଥିରୁ ଗଛ ପ୍ରସ୍ତୁତ କରାଯାଉଛି । ଗଛ ଗ୍ରହଣ କରି ପାରିବା ଭଳି ଅନବରତ ଲବଣ ଓ ଖାଦ୍ୟଯୋଗାଣ ବ୍ୟବସ୍ଥା ଚାଲୁ ରଖାଯାଇଥାଏ ଏବଂ ଏହି ଘରର ଜଳବାୟୁ, ତାପମାତ୍ରା ସବୁ କମ୍ପ୍ୟୁଟର ଦ୍ୱାରା ନିୟନ୍ତ୍ରିତ ହୁଏ । ଶ୍ରୀ କୁନିହିକୋ କହନ୍ତି ଯେ ମାଟିରେ ଗଛ ପୋତି ଚାଷ କରିବାକୁ ହେଲେ ହଳ କରି ସାର ପ୍ରୟୋଗ



(କୃଷି ହେଉଥିବା ସ୍ଥାନ ବା ଗବେଷଣାଗାର )

କରିବାକୁ ପଡ଼େ ଏବଂ ଘାସ ଗଛ ଇତ୍ୟାଦି ବାଛି ଶସ୍ୟ ଉତ୍ପାଦନ କରିବାରେ ବହୁ ପରିଶ୍ରମ ଓ ଖର୍ଚ୍ଚାନ୍ତ ହେବାକୁ ହୁଏ । ଅତ୍ୟଧିକ ପରିମାଣରେ କ୍ରମାଗତ ସାର ପ୍ରୟୋଗ ଦ୍ୱାରା ମାଟିର ଉର୍ବରତା ମଧ୍ୟ କ୍ରମେ ନଷ୍ଟ ହୋଇଥାଏ । ଏହିପ୍ରଣାଳୀରେ କୃଷି ଦ୍ୱାରା ପରିବାପତ୍ର ଓ ଶସ୍ୟଗଛ ବାହାରର ଝଡ଼, ତୋଫାନ, ବରଫପାତ, ଟାଣଖରା ଓ ଅତିବୃଷ୍ଟି ପାଣିପାଗଠାରୁ ସମ୍ପୂର୍ଣ୍ଣରୂପେ ମୁକ୍ତ ରହେ ଏବଂ ଫଳ ପ୍ରଚୁର ହୁଏ । ମାଟିରେ ମଞ୍ଜି ପୋତିବାର ୩ ମାସ ପରେ ଆମେ ଯେଉଁ ଫସଲ ପାଇଥାଉ ଏହି ପ୍ରଣାଳୀରେ ଫସଲ କଲେ ମଞ୍ଜି ପୋତିବାର ପାଞ୍ଚ ସପ୍ତାହ ପରେ ତାଠାରୁ ଅତି ଉନ୍ନତ, ଅଧିକ ଅମଳକ୍ଷମ, ହୃଷ୍ଟପୁଷ୍ଟ ଫସଲ ଆମେ ପାଇପାରିବା । ବିଦ୍ୟୁତ ଶକ୍ତି ଓ କାଚଘର ନିର୍ମାଣ ଇତ୍ୟାଦି କରାଯାଉଥିବାରୁ ଏହି ପଦ୍ଧତି ସାମାନ୍ୟ ବ୍ୟୟବହୁଳ ମାତ୍ର ଏହି ପ୍ରଣାଳୀରେ ଉତ୍କୃଷ୍ଟ ପନିପରିବା, ଫଳ ଉତ୍ପନ୍ନ ହୋଇ ପାରୁଥିବାରୁ ଏହା କ୍ରମେ ଲୋକପ୍ରିୟ ହେବାରେ ଲାଗିଛି । ଜାପାନର କୃଷିବିତ୍ ମିଃ. ନୋଜାଓ୍ୱା ସୋହିଗୋ ଏହି ପ୍ରଣାଳୀରେ ଗଛ ପୋତି ଗୋଟିଏ ଟମାଟୋ ଗଛରୁ ୭ ମାସ ମଧ୍ୟରେ ୧୩ ହଜାର ୩୧୨ଟି ଉତ୍କୃଷ୍ଟ ଧରଣର ବଡ଼ ଟମାଟୋ ଉତ୍ପାଦନ

କରି ଏକ ରେକର୍ଡ଼ ସୃଷ୍ଟି କରିଛନ୍ତି । ଜାପାନର ଟୋକିଓ ନିକଟବର୍ତ୍ତୀ ନିଲପୋର୍ଟ ମାର୍କେଟଠାରେ ଜାପାନର ପ୍ରଥମ 'ବାଇଓଫାର୍ମ' ପ୍ରତିଷ୍ଠିତ ହୋଇଥିଲା । ବର୍ତ୍ତମାନ ସୁଦ୍ଧା ଜାପାନରେ ୯୦୦ରୁ ଅଧିକ ବାଇଓଫାର୍ମ ପ୍ରତିଷ୍ଠିତ ହୋଇ ସାରିଛି । ଜାପାନ ବ୍ୟତୀତ ଡେନମାର୍କ, ସୁଇଡେନ, ଯୁକ୍ତରାଷ୍ଟ୍ର ଆମେରିକା, ସାଉଦି ଆରବ, କୋରିଆ, ମାଲେସିଆରେ ମଧ୍ୟ ଏହି ପ୍ରଣାଳୀରେ କୃଷି କାର୍ଯ୍ୟ ଆରମ୍ଭ ହୋଇଛି ଓ ଅଧିକ ଲୋକପ୍ରିୟ ହେବାରେ ଲାଗିଛି । ଏହା ଉପରେ ଅଧିକ ଗବେଷଣା କାର୍ଯ୍ୟ ମଧ୍ୟ ଚାଲୁ ରହିଛି ।

ମାଟି ନଥାଇ କିପରି ଗଛ ଲଗାଯାଇ ଏବେ କୃଷି କରାଯାଉଛି ତାହାତ ତୁମେମାନେ ଜାଣିଲ । ଦିନ ଆସିବ ଯେତେବେଳେ ଏହି ପ୍ରଣାଳୀରେ କୃଷିକାର୍ଯ୍ୟ କରାଯାଇ ପୃଥିବୀର କ୍ରମବର୍ଦ୍ଧିଷ୍ଣୁ ଲୋକସଂଖ୍ୟାକୁ ଆଜିର ବିଜ୍ଞାନୀମାନେ ଖାଦ୍ୟ ଯୋଗାଇବାକୁ ହୁଏତ ସକ୍ଷମ ହେବେ ।



# ଚୋର କରୁଥିବା ଗଛ

ରାତି ଅଧ । ଚାରିଆଡ଼େ ଶୁନ୍‌ଶାନ୍ । ହଠାତ ଏକ କୋଳାହଳ ଗାଁ ମୁଣ୍ଡରୁ ଶୁଣାଗଲା । ଲୋକେ ନିଦରୁ ଉଠି ଆଖି ମଳମଳ ଗାଁ ମୁଣ୍ଡର କୋଳାହଳ ଆସୁଥିବା ଜମିଦାର ରାମ ସାହୁ ଘର ଆଡ଼କୁ ଧାଇଁବାରେ ଲାଗିଥାନ୍ତି । ଜିତୁ ଆଉ ପିଙ୍କି ମଧ୍ୟ ଧଡ଼ପଡ଼ ହୋଇ ନିଦରୁ ଉଠି ବାପାଙ୍କ ସହିତ ଗାଁ ମୁଣ୍ଡକୁ ଧାଇଁଲେ । ସେଠାରେ ଯାଇ ଦେଖିଲେ ତିନିଜଣ ଢେଣ୍ଡିଆ ଲୋକ ଛୁରୀ ଅଣ୍ଟାରେ ଖୋସି ଠିଆ ହୋଇଛନ୍ତି । ଗାଁ ଲୋକେ ସେତେବେଳକୁ ଚାରିଆଡ଼ୁ ଘେରିଯାଇ ସେମାନଙ୍କଠାରୁ ଛୁରୀ ଛଡ଼ାଇନେଇ ତାଙ୍କୁ ଏକ ଦଉଡ଼ିରେ ବାନ୍ଧି ଦେଲେଣି । କିଛି ଦୂରରେ ଜିତୁ ସହିତ ପାଠ ପଢ଼ୁଥିବା ରାମ ସାହୁର ପୁଅ ମିଣ୍ଟୁ ବୀର ଦର୍ପରେ ଠିଆ ହୋଇଥାଏ । ସମସ୍ତେ ତାର ବୁଦ୍ଧିକୁ ପ୍ରଶଂସା କରୁଥାନ୍ତି । କଥା କ'ଣ, ବାପା କହିଲେ ଏମାନେ ସବୁ ଚୋର । ରାମ ସାହୁଙ୍କ ଘରୁ ଟଙ୍କା, ସୁନା, ଗହଣା ପ୍ରଭୃତି ଚୋରି କରି ନେଇ ଚାଲିଥିଲେ । ଏହାପରେ ଗାଁରେ ଅନ୍ୟମାନଙ୍କ ଘରେ ପଶି ଚୋରି କରିଥାନ୍ତେ । ମାତ୍ର ଯେତେବେଳେ ଏମାନେ ସେମାନଙ୍କ ଘରକୁ ପଶିଲେ ମିଣ୍ଟୁ ଚୁପ କରି ଲୁଚି ପଡ଼ିଶା ଘରେ ପହଞ୍ଚି ସେଠାରେ ପାଟି କରି ହାଲି କରିଦେବାରୁ ଗାଁ ଲୋକେ ଉଠି ତାଙ୍କୁ ଘେରିଗଲେ ଏବଂ ସେମାନେ ସମସ୍ତେ ଧରାପଡ଼ିଗଲେ । ନଚେତ୍ ସେମାନେ ଆଜି ବହୁ ଜିନିଷ ଗାଁରୁ ଚୋରି କରି ନିଶ୍ଚୟ ନେଇଯାଇଥାନ୍ତେ । ବାପା କହିଲେ ଚୋରମାନେ ଭାରି ନିର୍ଦ୍ଦୟ । ସେମାନେ ଧନ ଲୋଭରେ ଲୋକଙ୍କୁ ହତ୍ୟା କରି ମାରି ଦେବାକୁ ମଧ୍ୟ ପଛାଇବେ ନାହିଁ । ସେମାନଙ୍କ ମନରେ ଦୟା ମାୟା କିଛି ନ ଥାଏ । ପର ଧନ ପାଇବାପାଇଁ ସେମାନେ ପାଗଳ । କିଛି ସମୟ ପରେ ପୁଲିସ ଆସି ସେମାନଙ୍କୁ ବାନ୍ଧି ନେଇଗଲା । ଜିତୁକୁ କିନ୍ତୁ ଘଟଣାଟା ଆଶ୍ଚର୍ଯ୍ୟ ଲାଗୁଥାଏ । ସେ ବାପାଙ୍କୁ ପଚାରିଲା, ବାପା, ମଣିଷ କାହିଁକି ଚୋରି କରେ ? ବାପା କହିଲେ— ଆମ ସମାଜରେ ବହୁଲୋ

ପ୍ରକାର ମଣିଷ ଅଛନ୍ତି । କେତେକ ଅଛନ୍ତି ଯେଉଁମାନେ ଅଳସୁଆ, ପରିଶ୍ରମ କରି ଧନ ଉପାର୍ଜନ କରିବାକୁ ଭଲ ପାଆନ୍ତି ନାହିଁ । ପର ଧନ ଉପରେ ସେମାନଙ୍କର ଖାଲି ଲୋଭ । ତେଣୁ ଅନ୍ୟ ଯେଉଁ ଲୋକ କଠିନ ପରିଶ୍ରମ କରି ଧନ ସଞ୍ଚୟ କରି ରଖିଥାଏ ଏବଂ ଚୋରମାନେ ରାତିରେ ସେମାନଙ୍କ ଘରେ ପଶି ସେମାନଙ୍କର ସଞ୍ଚିତ ଟଙ୍କା, ପଇସା, ସୁନା ନେଇ ଯାଆନ୍ତି ଏବଂ ଏହାକୁ ବାଣ୍ଟି କରି ଆନନ୍ଦରେ ଖାଆନ୍ତି । ଏହା ସରିଗଲେ ପୁଣି ଚୋରି କରନ୍ତି । ରାମବାବୁଙ୍କ ଘରୁ ଚୋରିକରି ନେଉଥିବା ରେଡ଼ିଓ, ସୁନା ଇତ୍ୟାଦି କିପରି ଧରାପଡ଼ିଥିଲା ସେକଥା ବାପା ଜବ୍ବୁ ଓ ପିଙ୍କିଙ୍କୁ କହିଲେ । ସେ କହିଲେ ଆମ୍ଭମାନଙ୍କୁ ଚୋରମାନଙ୍କ ହାତରୁ ରକ୍ଷା କରିବାକୁ ସରକାର ପୁଲିସ ବାହିନୀକୁ ସୃଷ୍ଟି କରିଛନ୍ତି । ଜବ୍ବୁ ବାପାଙ୍କୁ ପଚାରିଲା, କ'ଣ କେବଳ ମଣିଷଙ୍କ ମଧ୍ୟରେ ଚୋର ଅଛନ୍ତି ? ବାପା କହିଲେ ମଣିଷମାନଙ୍କ ମଧ୍ୟରେ ବିଭିନ୍ନ ପ୍ରକାର ଚୋର ଅଛନ୍ତି । ତୁମ ପିଲାମାନଙ୍କ ମଧ୍ୟରେ କେତେକ ଅଳସୁଆ ପିଲା ଆଦୌ ଠିକ୍ ସମୟରେ ପାଠ ପଢନ୍ତି ନାହିଁ । ସେମାନେ ପରୀକ୍ଷାରେ ଅନ୍ୟ ସାଙ୍ଗ-ପିଲାଙ୍କଠାରୁ ଦେଖି ବା କପି କରି ପାଠ ଚୋରି କରନ୍ତି, ସେମାନେ ମଧ୍ୟ ଏକ ଶ୍ରେଣୀର ପାଠ ଚୋର । ପଶୁ ପକ୍ଷୀଙ୍କ ମଧ୍ୟରେ ମଧ୍ୟ ଚୋର ଅଛନ୍ତି । ବିଲୁଆ ଏକ ବଡ଼ ଚୋର । ଜଙ୍ଗଲରେ ବାଘ, ଭାଲୁ, ସିଂହ ପ୍ରଭୃତି ବଡ଼ ବଡ଼ ପଶୁ ଶିକାର କରି ଖାଉଥିବା ବେଳେ ବିଲୁଆ ଛକି ରହି-ଥାଏ । ସୁବିଧା ଦେଖି ଖଣ୍ଡେ ମାଂସ ଧରି ମାରେ ଡିଆଁ । ପକ୍ଷୀମାନଙ୍କ ମଧ୍ୟରେ କୁଆ, ଚିଲ ପ୍ରଭୃତି ପରଦ୍ୱାରା ଶିକାର ହୋଇଥିବା ଖାଦ୍ୟକୁ ଚୋରି କରି ଖାଆନ୍ତି । ସବୁଠାରୁ ଆଶ୍ଚର୍ଯ୍ୟର କଥା ଉଦ୍ଭିଦ ଜଗତ ବା ଗଛମାନଙ୍କ ମଧ୍ୟରେ ମଧ୍ୟ କେତେକ ଚୋର ଉଦ୍ଭିଦ ଅଛନ୍ତି ଯେଉଁମାନେ ଅନ୍ୟ ଗଛଠାରୁ ଚୋରିକରି ଖାଆନ୍ତି । ସେ ବିଷୟରେ ବୋଧହୁଏ ତୁମ୍ଭେ-ମାନେ ଜାଣି ନଥିବ । ସେତେବେଳକୁ ରାତି ବହୁତ ହୋଇଥାଏ, ମାତ୍ର ଗଛ କିପରି ଚୋରି କରି ଖାଏ ସେ ବିଷୟରେ ଶୁଣିବାକୁ ଜବ୍ବୁ ଓ ପିଙ୍କି ଏକ ଜିଦ କରି ବସିଲେ । ବାପା ତେଣୁ ବାଧ୍ୟ ହୋଇ କହିଲେ ତେବେ ଶୁଣ ଚୋରି କରୁଥିବା ଗଛ କଥା ମୁଁ କହୁଛି ।

ବାପା କହିଲେ ତୁମେ ଦେଖୁଥିବ ସବୁ ସବୁଜ ଗଛ ନିଜ ନିଜର ଖାଦ୍ୟ ପ୍ରସ୍ତୁତ କରନ୍ତି ମାତ୍ର ଉଦ୍ଭିଦ ଜଗତରେ ଏପରି କେତେକ ଗଛ ଅଛନ୍ତି ଯେଉଁମାନଙ୍କ ରଙ୍ଗ ସବୁଜ ନୁହେଁ । ସେମାନଙ୍କ ଦେହରେ ସବୁଜକଣା ନଥିବାରୁ ସେମାନେ ନିଜର ଖାଦ୍ୟ ନିଜେ ପ୍ରସ୍ତୁତ କରି ପାରନ୍ତି ନାହିଁ । ଫଳରେ ସେମାନେ ବଞ୍ଚି ରହିବା ପାଇଁ ଅନ୍ୟ ଗଛ ତିଆରି କରି ରଖିଥିବା ଖାଦ୍ୟକୁ ଚୋରି କରି ଆଣି ନିଜେ ଖାଇ ବଞ୍ଚନ୍ତି । ଏହି ପ୍ରକାର ଗଛମାନଙ୍କ ମଧ୍ୟରୁ ଯେଉଁ କେତେକ ଜୀବନ୍ତ ଗଛରୁ ଖାଦ୍ୟ ଚୋରି କରି ଆଣନ୍ତି, ସେମାନଙ୍କୁ ଆମେ ପାରସାଇଟ ବା ପରଜୀବୀ ଉଦ୍ଭିଦ ବୋଲି କହିଥାଉ । ଏହି ଶ୍ରେଣୀର ଉଦ୍ଭିଦ ଦୁଇ ପ୍ରକାର । କେତେକ ଉଦ୍ଭିଦ ଖାଦ୍ୟପାଇଁ ସମ୍ପୂର୍ଣ୍ଣ ରୂପେ ଅନ୍ୟ ଜୀବନ୍ତ ଗଛ ଉପରେ ନିର୍ଭର କରିଥାନ୍ତି, ମାତ୍ର ଅନ୍ୟ କେତେକ ଗଛ ନିଜର ଖାଦ୍ୟ ନିଜେ ପ୍ରସ୍ତୁତ କରନ୍ତି । କିନ୍ତୁ କେତେକ ସ୍ୱତନ୍ତ୍ର ପ୍ରକାରର ଖାଦ୍ୟ ପାଇଁ ସେମାନେ ଅନ୍ୟ ଗଛ ଉପରେ ନିର୍ଭର କରିଥାନ୍ତି । ବାପା କହିଲେ ଆମ ବାଡ଼ିର ଜାମୁ-କୋଳି ଗଛ ଉପରେ ମାଡ଼ିଥିବା ହଳଦିଆ ରଙ୍ଗର ନାଡ଼ି ପରି ଲଟା



ପରଭୋଜୀ ନିର୍ମୂଳି

ନିର୍ମୂଳୀ ହିଁ ପୂର୍ଣ୍ଣ ପରଭୋଜୀ ଉଦ୍ଭିଦ । ଏହାର ମୂଳ ନାହିଁ । ଏହି ଲଟାରୁ ଖଣ୍ଡେ ଛିଣ୍ଡାଇ ନେଇ ଯେ କୌଣସି ଜୀବନ୍ତ ଗଛରେ ପକାଇ ଦେଲେ ଏହା ନିଜ ଦେହରୁ ଏକ ଶୁଣ୍ଢ ବାହାର କରି ଯେଉଁ ଗଛରେ ଆଶ୍ରୟ

ନେଇଥାଇ ସେହି ଗଛର ତ୍ୱକ ମଧ୍ୟକୁ ଜବରଦସ୍ତ ଶୁଣ୍ଢକୁ ପୂରାଇ ଦିଏ, ଏବଂ ସେହି ଗଛରୁ ଶୁଣ୍ଢ ସାହାଯ୍ୟରେ ଜବରଦସ୍ତ ଖାଦ୍ୟ ଶୋଷି ଆଣି ନିଜେ ଖାଇ ବଞ୍ଚେ । ନିର୍ମୂଳୀ ଗଛର ମୂଳ ନାହିଁ ବୋଲି ଜନ୍ତୁ ଓ ପିଙ୍କି ଜାଣିନଥିଲେ । ସେମାନେ କୌତୂହଳୀ ହୋଇ କହିଲେ—ବାପା, ଆଂଶିକ ଭାବେ ନିର୍ଭର କରୁଥିବା ପରଭୋଜୀ ଉଦ୍ଭିଦ କିଏ ? ବାପା କହିଲେ, ଜଙ୍ଗଲରେ ଦେଖାଯାଉଥିବା ବଣ୍ଡାଲେରନ୍ଥସ ପ୍ରଭୃତି ଏହି ଶ୍ରେଣୀର ଉଦ୍ଭିଦ । ବାପା କହିଲେ ଆଚ୍ଛା ପୃଥିବୀର ସବୁଠାରୁ ବଡ଼ ଫୁଲ କିଏ ଜାଣିଛ ? ଜାଭା, ସୁମାତ୍ରା ପ୍ରଭୃତି ଦେଶରେ ଦେଖାଯାଉଥିବା ରଫଲସିଆ



**ପୃଥିବୀର ବୃହତ୍ତମ ଫୁଲ ରାଫ୍ଲେସିଆ**

ନାମକ ଏକ ଫୁଲ ହିଁ ପୃଥିବୀର ସବୁଠାରୁ ବଡ଼ ଫୁଲ । ଏହାର ବ୍ୟାସ ୦ ଦଶମିକ ୫ରୁ ଏକ ମିଟର ଓ ଓଜନ ପ୍ରାୟ ଆଠ କିଲୋ ଯାଏ ହୋଇଥାଏ । ମାତ୍ର ଆଶ୍ଚର୍ଯ୍ୟର କଥା ଏହି ଫୁଲର ଗଛ ନିଜର ଖାଦ୍ୟ ପାଇଁ ଅନ୍ୟ ଗଛଉପରେ ନିର୍ଭର କରିଥାଏ । ଅନ୍ୟ ଗଛର ଚେର ମଧ୍ୟକୁ ଏଥିରୁ ଶୁଣ୍ଢ ବାହାରି ଜବରଦସ୍ତ ପଶି ଖାଦ୍ୟ ସଂଗ୍ରହ କରିଥାଏ । ସେହିପରି ଭାରତର ସବୁଠାରୁ ବଡ଼ ଫୁଲ ସୁପ୍ରିୟା—ଯାହାକି ସାଧାରଣତଃ ଆସାମ, ନାଗାଲ୍ୟାଣ୍ଡ ପ୍ରଭୃତି ରାଜ୍ୟର ପର୍ବତାଞ୍ଚଳରେ ଫୁଟେ ଏବଂ ଏହାର ବ୍ୟାସ ୦ ଦଶମିକ ୩ ମିଟର ଯାଏ ହୋଇଥାଏ । ଏହା ମଧ୍ୟ ଏକ ସମ୍ପୂର୍ଣ୍ଣ ପରଭୋଜୀ ଉଦ୍ଭିଦ । ଏହା ଅନ୍ୟ ଗଛର ଚେରରୁ ଖାଦ୍ୟ ସଂଗ୍ରହ କରି ବଞ୍ଚିଥାଏ ।

ବାପା ପୁଣି କହିଲେ ଆମ୍ଭେମାନେ ସବୁଦିନେ ଚନ୍ଦନ ମୁଣ୍ଡରେ ଲଗାଉ । ଦେବଦେବୀଙ୍କ ପୂଜାବେଳେ ଚନ୍ଦନ ବ୍ୟବହୃତ ହୁଏ । ଏହା ଏକ ପବିତ୍ର କାଠ । ଏହାର ସୁଗନ୍ଧ ଚମତ୍କାର ମାତ୍ର ଏହି ଚନ୍ଦନଗଛ ମଧ୍ୟ ଏକ ଆଂଶିକ ପରଭୋଜୀ ଉଦ୍ଭିଦ । ଏହି ଗଛ ସାଧାରଣତଃ ବାଙ୍ଗାଲୋର, ଆନ୍ଧ୍ରପ୍ରଦେଶର ଜଙ୍ଗଲ ଓ ଅନ୍ୟାନ୍ୟ ଅଞ୍ଚଳରେ ଦେଖାଯାଏ । ଚନ୍ଦନ ଗଛ ଅନ୍ୟ ଉଦ୍ଭିଦର ଚେରରୁ ନିଜର ଖାଦ୍ୟ ସଂଗ୍ରହ କରିଥାଏ ।

ଏହା ବ୍ୟତୀତ ଅନ୍ୟ କେତେକ ଉଦ୍ଭିଦ ଅଛନ୍ତି ଯେଉଁମାନେ ମୃତ ଜୀବର ବା ମୃତ ଉଦ୍ଭିଦର ଶରୀରରୁ ଆବଶ୍ୟକୀୟ ଖାଦ୍ୟ ତିଆରି କରି ଆଣି ଖାଇ ବଞ୍ଚିଥାନ୍ତି । ଏମାନଙ୍କୁ ମୃତଜୀବୀ ଉଦ୍ଭିଦ କୁହାଯାଏ । ଆସାମ, ମେଘାଳୟ ଭୂଭାଗ ପ୍ରଦେଶର ଖାସି ପାର୍ବତ୍ୟାଞ୍ଚଳର ୧୮୦୦ରୁ ୨୫୦୦ ମିଟର ଉଚ୍ଚ ପାହାଡ଼ ପର୍ବତରେ ଜନ୍ମୁଥିବା ମନୋଟ୍ରୋପା ବା ଇଣ୍ଡିଆନ ପାଇପ ଗଛ ଏହିଜାତୀୟ ଉଦ୍ଭିଦ ଅଟେ ।

ବାପାଙ୍କ କଥା ଜଲୁ ଓ ପିଙ୍କି ଏକ ଧ୍ୟାନରେ ଶୁଣୁଥିଲେ । ବାପା କହିଲେ ତୁମ୍ଭେମାନେ ବର୍ତ୍ତମାନ ପିଲା । ବଡ଼ ହୋଇ ମନ ଦେଇ ପାଠ ପଢ଼ିଲେ ବୃକ୍ଷର ଉଦ୍ଭିଦ ବିଷୟରେ ଆହୁରି ବହୁତ କଥା ଜାଣିପାରିବ । ତେଣୁ ଆଜିଠାରୁ ମନଦେଇ ପାଠ ପଢ଼ । ବଡ଼ ଲୋକମାନେ କହିଯାଇଛନ୍ତି—

"ଥିଲେ ଆଉ ପଛେ ଗୁଣ ହଜାର,
ବିଦ୍ୟା ବୁଦ୍ଧି ନଥିଲେ ସବୁ ଅସାର ।"

ଏହି ସମୟରେ କୁଆ କାʼ କାʼ କରି ରାତି ପାହିବାର ସଙ୍କେତ ଦେଲା । ବାପା, ଜଲୁ ଓ ପିଙ୍କି ବାହାରକୁ ଯାଇ ମୁହଁ ହାତ ଧୋଇ ବ୍ୟାୟାମ କରିବାକୁ ଗଲେ ।



# ଉଡ଼ନ୍ତା ସରୀସୃପ—ରାମ୍ପୋରାଇନକସ

ବହୁତ ଦିନ ତଳର କଥା । ଯେତେବେଳେ ଆମ ପୃଥିବୀ ପୃଷ୍ଠରେ ବର୍ତ୍ତମାନ ପରି ସୁନ୍ଦର ବୃକ୍ଷ ଲତା କିଛି ନଥିଲା । ଜନ, ମାନବ, ଜୀବଜନ୍ତୁ କୌଣସି ସଜୀବ ପ୍ରାଣୀ ନଥିଲେ । ପୃଥିବୀ ଗୋଟିଏ ଜଳନ୍ତା ଗାଉଲା ପିଣ୍ଡ ପରି ହୁତୁହୁତୁ ହୋଇ ଜଳୁଥିଲା । ଏହିପରି କେତେକାଳ ଏହା ଉତପ୍ତ ରହିବା ପରେ କ୍ରମେ ଏହା ଥଣ୍ଡା ହେଲା । ଯେତେବେଳେ ସବୁବେଳେ ପୃଥିବୀ ପୃଷ୍ଠରେ ଭୂମିକମ୍ପ ଲାଗିରହି ଭୟଙ୍କର ଶବ୍ଦ ହୋଇ ବିସ୍ଫୋରଣ ଓ ପରିବର୍ତ୍ତନ ଲାଗି ରହୁଥିଲା । ବହୁ ବର୍ଷ ପରେ ପୃଥିବୀ ପୃଷ୍ଠ କ୍ରମେ ଥଣ୍ଡା ହୋଇ ଜଳ ସୃଷ୍ଟି ହେଲା ଏବଂ ପ୍ରାଣୀମାନେ ଜନ୍ମହେଲେ । ପ୍ରଥମେ ପୃଥିବୀ ପୃଷ୍ଠରେ ଦେଖାଦେଇଥିବା ପ୍ରାଣୀମାନେ ବିଭିନ୍ନ ଆକୃତି ପ୍ରକୃତିର ଥିଲେ । ଡାଏନୋସରସ ପରି ଅଦ୍ଭୁତ ଜୀବ ହାତୀଠାରୁ ୪୦।୫୦ ଗୁଣ ବଡ଼ ଥିଲା । ଡାଏନୋସରସ ପରି ଉଭୟଚର ପ୍ରାଣୀମାନେ ପୃଥିବୀ ପୃଷ୍ଠରେ ପ୍ରାୟ ଏକ କୋଟି ବର୍ଷ ଯାଏ ବଞ୍ଚି ରହିଥିଲେ । ଏହି ସମୟରେ ପୃଥିବୀ ପୃଷ୍ଠରେ ଏକ ଶ୍ରେଣୀର ଅଦ୍ଭୁତ ଜୀବ ଦେଖା ଦେଇଥିଲା । ଏହା ଦେଖିବାକୁ ଯେପରି ଭୟଙ୍କର, ଏହାର ଆଚରଣ ବ୍ୟବହାର ମଧ୍ୟ ତାଠାରୁ ଅଧିକ ଆଶ୍ଚର୍ଯ୍ୟଜନକ । ଏମାନଙ୍କ ମଧ୍ୟରୁ ଗୋଟିଏର ନାମ ହେଉଛି 'ରାମ୍ପୋରାଇନକସ' । ଏହା ଏକ ସରୀସୃପ—ମାତ୍ର ଏହା ଆକାଶରେ ଉଡ଼ୁଥିଲା । ଏହାର ଆଖି ବିରାଟ । ଲମ୍ବା ଥଣ୍ଟରେ ବିରାଟ ବିରାଟ ଦାନ୍ତ, ପୁଣି ବଗ ପରି ଏକ ଲମ୍ବା ବେକ ଏବଂ ମାଙ୍କଡ଼ ପରି ଏକ ବିରାଟ ଲାଞ୍ଜ । ଏହା ଜଳ, ସ୍ଥଳ, ଆକାଶ ସବୁଆଡ଼େ ବୁଲି ପାରୁଥିଲା ଏବଂ ଏହାର ଆଗ ହାତ ସହିତ ସଂଯୁକ୍ତ ହୋଇ ରହିଥିବା ଏକ ବିରାଟ ପକ୍ଷ ସାହାଯ୍ୟରେ ବିଭିନ୍ନ ଆଡ଼େ ଉଡ଼ି ପାରୁଥିଲା । ପକ୍ଷୀମାନଙ୍କର ଯେପରି ଡେଣା ଥାଏ, ଏହାର ଡେଣା ସେପରି ନଥିଲା । ଆଗ ହାତରେ ଥିବା ୫ଟି ଆଙ୍ଗୁଠିରୁ ଗୋଟିଏ ଆଙ୍ଗୁଠି ବଢ଼ି ଏକ ବିରାଟ ପକ୍ଷ ସୃଷ୍ଟି କରିଥିଲା ଯାହାକି ଏହାର ପଛ ଗୋଡ଼ଯାଏ ଲମ୍ବି ରହିଥିଲା । ଏହା

ଜଳଭାଗ ଓ ସ୍ଥଳଭାଗରୁ ସହଜରେ ଖାଦ୍ୟ ସଂଗ୍ରହ କରି ବଞ୍ଚୁଥିଲେ ।



ଉଡ଼ନ୍ତା ସରୀସୃପ,

ଏହାର ରୂପ ଅତି ଭୟଙ୍କର ଥିଲା ଏବଂ ପଶୁ, ପକ୍ଷୀ, ସରୀସୃପ ସବୁ ପ୍ରାଣୀଙ୍କର ଚରିତ୍ର ଏହାର ଥିଲା । ଏହା ମଧ୍ୟ ଏକ ପୁରାତନ କାଳରେ ଦେଖା ଦେଇଥିବା ରାକ୍ଷସ ଜୀବ । ପୁରାତନ କାଳରେ ଦେଖା ଯାଉଥିବା ସରୀସୃପମାନେ ଉଡ଼ିପାରୁ ନଥିବା ବେଳେ ଏହି ଶ୍ରେଣୀର ସରୀସୃପମାନେ ଉଡ଼ିପାରୁଥିଲେ ଏବଂ ପୃଥିବୀରେ ଆଜିଯାଏ କୌଣସି ସରୀସୃପ ଉଡ଼ି-ପାରୁନଥିବା ବେଳେ ଏହି ଶ୍ରେଣୀର ସରୀସୃପମାନେ ଆକାଶରେ ଉଡ଼ି-ପାରୁଥିବାରୁ ସରୀସୃପମାନଙ୍କ ମଧ୍ୟରେ ଏକ ବିସ୍ମୟ ରୂପେ ଆଜି ଯାଏ ପରିଗଣିତ ।

●

# ଜଳଚର ସ୍ତନ୍ୟପାୟୀ—ନୀଳତିମି

ସଜୀବ ପ୍ରାଣୀ ଉଦ୍ଭିଦଙ୍କୁ ନେଇ ଆମର ପୃଥିବୀ ପରିପୂର୍ଣ୍ଣ । ଏହି ପ୍ରାଣୀ ତଥା ଉଦ୍ଭିଦମାନେ ଜଳଭାଗ ଓ ସ୍ଥଳଭାଗରେ ବାସ କରି ଆଆନ୍ତି । ପୃଥିବୀର ବୈଚିତ୍ର୍ୟ ଯେ ଖାଲି ଆଖିକୁ ଦିଶୁନଥିବା ଏକ କୋଷୀ ପ୍ରାଣୀଠାରୁ ଆରମ୍ଭ କରି ବିରାଟକାୟ ଜୀବ ସବୁ ଏହା ପୃଷ୍ଠରେ ବାସ କରନ୍ତି । ସେମାନଙ୍କର ଜୀବନ ଯାପନ ପ୍ରଣାଳୀ ପୃଥକ । ଅଧିକାଂଶ ଲୋକେ ସ୍ଥଳଭାଗରେ ବାସ କରୁଥିବା ହାତୀକୁ ପୃଥିବୀର ସବୁଠାରୁ ବଡ଼ ସ୍ତନ୍ୟପାୟୀ ପ୍ରାଣୀ ବୋଲି ଭାବିଥାନ୍ତି ମାତ୍ର ହାତୀଠାରୁ ୧୦।୧୨ ଗୁଣ ବଡ଼ ସ୍ତନ୍ୟପାୟୀ ପ୍ରାଣୀ ଯେ କି ସମୁଦ୍ର ମଧ୍ୟରେ ସବୁବେଳେ ରହିଥାଏ, ତାହାହିଁ ପୃଥିବୀର ସବୁଠାରୁ ବଡ଼ ପ୍ରାଣୀ । ଏହାର ନାମ ତିମି । ଗୋଟିଏ ତିମି ଛୁଆର ଓଜନ ଗୋଟିଏ ବଡ଼ ହାତୀର ଓଜନ ଠାରୁ ଅଧିକ ହୋଇଥାଏ । ତିମିର ଖାଲି ମୁଣ୍ଡର ଓଜନ ହାତୀର ଓଜନ ଠାରୁ ମଧ୍ୟ ଅଧିକ ହୋଇଥାଏ ।

ତିମିମାନେ ସମୁଦ୍ର ମଧ୍ୟରେ ବାସ କରୁଥିଲେ ମଧ୍ୟ ଏମାନେ ମଣିଷ, ବାଘ, ଭାଲୁ , ହାତୀ, କୁକୁର, ଛେଳି, ମେଣ୍ଢା ପ୍ରଭୃତି ସ୍ଥଳଭାଗର ଜୀବଙ୍କ ପରି ସ୍ତନ୍ୟପାୟୀ ଅଟନ୍ତି । ଏମାନଙ୍କର ଶରୀରର ଆକୃତି ଅନେକାଂଶରେ ମାଛର ଆକୃତି ପରି ହୋଇଥାଏ । ଏହି ତିମିମାନେ ସେମାନଙ୍କର ଲାଞ୍ଜ ସାହାଯ୍ୟରେ ତଥା ଆଗ ପକ୍ଷ ସାହାଯ୍ୟରେ ପାଣିରେ ପହଁରିଥାନ୍ତି । ତିମିର ପଛ ଗୋଡ଼ ବା ଫ୍ଲାପର ନଥାଏ ମାତ୍ର କେତେକଙ୍କର ମାଛମାନଙ୍କ ପରି ଶରୀରର ପଛ ଭାଗରେ ପକ୍ଷ ଥାଏ । ତେଣୁ ଅଧିକାଂଶ ଲୋକେ ଏମାନଙ୍କୁ ମାଛ ବୋଲି ଭାବିଥାନ୍ତି । ମାତ୍ର ଏମାନେ ସ୍ତନ୍ୟପାୟୀ । ମାଆ ତିମି ସ୍ଥଳଭାଗରେ ବାସକରୁଥିବା ସ୍ତନ୍ୟପାୟୀ ପ୍ରାଣୀଙ୍କ ପରି ଶିଶୁକୁ ତାର ପେଟତଳେ ଥିବା ସ୍ତନ୍ୟରୁ କ୍ଷୀର ଖୁଆଇ ବଞ୍ଚାଇଥାଏ । ସାଧାରଣତଃ ଶୀତଦିନେ ତିମିମାନେ ବଂଶବୃଦ୍ଧି କରିଥାନ୍ତି । ପ୍ରାୟ ୧୨ ମାସ ପିଲାକୁ ପେଟରେ ବଢ଼ାଇବା ପରେ ମା' ତିମି ଜନ୍ମ

ଦେଇଥାଏ । ଏମାନେ ଥରକେ ଏକରୁ ଅଧିକ ଛୁଆ ପ୍ରାୟ ଜନ୍ମ କରି ନଥାନ୍ତି । ଶିଶୁ ତିମିର ଓଜନ ଅଢ଼େଇରୁ ୩ ଟନ ଓ ଲମ୍ବ ୨୦ ରୁ ୨୩ ଫୁଟ ଯାଏ ହୋଇଥାଏ । ଶିଶୁ ତିମି ପ୍ରାୟ ୭ ମାସ ଯାଏ ଦିନକୁ ୨୦୦ ପାଉଣ୍ଡ କ୍ଷୀର ତା ମା'ଠାରୁ ଖାଇଥାଏ । ଇଂରାଜୀ ପ୍ରାଣୀବିତ୍ ଆଲିଷ୍ଟର ହାର୍ଡ଼ି ତିମିମାନଙ୍କ ବିଷୟରେ ବହୁ ବର୍ଷ ଗବେଷଣା କରି ବହୁ ତଥ୍ୟ ପ୍ରକାଶ କରିଛନ୍ତି । ପ୍ରାୟ ପ୍ରତି ଦୁଇବର୍ଷରେ ତିମି ଥରେ ଛୁଆ ପ୍ରସବ କରିଥାଏ । ଏହା ଅନ୍ୟ ସ୍ତନ୍ୟପାୟୀଙ୍କ ପରି ନିଜ ଦେହରେ ଥିବା ଫୁସଫୁସ ସାହାଯ୍ୟରେ ଶ୍ୱାସକ୍ରିୟା ସମ୍ପାଦନ କରିଥାଏ । ମାଛମାନଙ୍କ ପରି ଏହା ଦେହରେ ଶ୍ୱାସକ୍ରିୟା ପାଇଁ ଗାଲି ନାହିଁ । ଅଧିକାଂଶ ସ୍ଥଳ-ଭାଗର ସ୍ତନ୍ୟପାୟୀ ପ୍ରାଣୀଙ୍କ ପରି ତିମି ଦେହରେ ଲୋମ ନାହିଁ । ମାତ୍ର ଶିଶୁ ତିମି ଦେହରେ ଲୋମ ଥିବାର ଦେଖାଯାଇଥାଏ । ଶ୍ୱାସକ୍ରିୟା ପରେ ଏହା ବ୍ୟବହାର କରିଥିବା ବାୟୁକୁ ଖୁବ ଜୋର୍‌ରେ ମୁଣ୍ଡ ଉପରେ ଥିବା ଏକ ରନ୍ଧ୍ର ଦ୍ୱାରା ପଦାକୁ ବାହାର କରି ଦେଇଥାଏ । ଏହି ବାୟୁ ପଦାକୁ ଏତେ ଜୋର୍‌ରେ ବାହାରି ଆସେ ଯେ ବେଳେ-ବେଳେ ଏହା ନିକଟସ୍ଥ ଜଳକୁ ପ୍ରାୟ ୧୫ ଫୁଟ ଉପରକୁ ଉଠାଇ ନିଏ । ତେଣୁ ସମୁଦ୍ର ମଧ୍ୟରେ ପିଚକାରୀ ପରି ଉପରକୁ ପାଣି ଉଠୁଥିବା ସ୍ଥାନରେ ତିମିର ଅବସ୍ଥିତି ସହଜରେ ଜାଣିହୁଏ । ଆମ୍ଭମାନଙ୍କ ପରି ଏହା ଶ୍ୱାସକ୍ରିୟା ପାଇଁ ସଦ୍ୟ ବାୟୁ ବ୍ୟବହାର କରିଥାଏ, ଏବଂ ବାୟୁ ଗ୍ରହଣ କରିବା ବେଳେ ନାକ ପୁଡ଼ାକୁ ପାଣି ଉପରକୁ ଟେକି ରଖିଥାଏ । ଜନ୍ମ ହେବା ପରେ ଶିଶୁ ତିମି ମା' ତିମି ସହିତ ଅଭିନ୍ନ ଆଡ଼େ ବୁଲୁଥାଏ ।

ତିମି ଦେହର କହରା ବା କଳା ଚମଡ଼ା ତଳେ ଏକ ମୋଟା ଚର୍ବିର ସ୍ତର ଥାଏ । ବେଳେ ବେଳେ ଏହି ଚର୍ବି ସ୍ତର ପ୍ରାୟ ଦୁଇ ଫୁଟରୁ ଅଧିକା ମୋଟା ହୋଇଥାଏ । ଏହା ଅତ୍ୟଧିକ ଥଣ୍ଡାରୁ ତିମିକୁ ରକ୍ଷା କରିବା ସଙ୍ଗେ ସଙ୍ଗେ ଅନ୍ୟ ପ୍ରାଣୀମାନଙ୍କ ଆକ୍ରମଣରୁ ଏହାକୁ ରକ୍ଷା କରେ ଏବଂ ତିମି ଗଭୀର ସମୁଦ୍ରକୁ ଗଲାବେଳେ ଅତ୍ୟଧିକ ଜଳଚାପରୁ ତିମିକୁ ରକ୍ଷା କରିଥାଏ । ଏତେ ପରିମାଣରେ ଚର୍ବି ଥିବାରୁ



ଏହାର ଶରୀର ଏତେ ବିରାଟକାୟ ହୋଇପାରିଛି । ସମୁଦ୍ର ମଧ୍ୟରେ କେତେ ଜାତିର ତିମି ଦେଖାଯାଇଥାନ୍ତି । ସମସ୍ତେ ପ୍ରାୟ ଏକ ପ୍ରକାର ଖାଦ୍ୟ ଖାଇନଥାନ୍ତି । ସେମାନଙ୍କର ଆକାର ମଧ୍ୟ ଭିନ୍ନ ପ୍ରକାର ହୋଇଥାଏ । ନୀଳତିମି ସବୁଠାରୁ ବଡ଼ । ଏହା ଥରକେ ପ୍ରାୟ ଦେଢ଼ଶହ

ଓଜନର ଖାଦ୍ୟ ଖାଇଥାଏ । ଏହାର ଲମ୍ବ ପ୍ରାୟ ୧୦୦ ଫୁଟ ଓ ଓଜନ ୧୫୦ ଟନ ଯାଏ ହୋଇଥାଏ । ଯେତେବେଳେ ଆମ ହାତୀର ଓଜନ ପ୍ରାୟ ୭ ଟନ, ତେଣୁ ଏହା ହାତୀଠାରୁ କେତେ ବଡ଼ଟିକାୟ ସହଜରେ ଅନୁମାନ କରାଯାଇପାରେ । ସବୁ ଶ୍ରେଣୀର ତିମିର ଦାନ୍ତ ନାହିଁ । କେତେକଙ୍କର ପାଟିର ଉପରଭାଗରେ ତିମି ହାଡ଼ ଥାଏ । କେତେକଙ୍କର ଛୋଟ ଛୋଟ ଦାନ୍ତ ଥାଏ ଯାହା କେବଳ ଖାଦ୍ୟ ଧରିବାରେ ସାହାଯ୍ୟ କରିଥାଏ । ଏମାନେ ଜେଲି ଫିସ, କଙ୍କଡ଼ା, ମାଛ, ପେଙ୍ଗୁଇନ ଓ ଉଦ୍ଭିଦ ପ୍ରଭୃତିଙ୍କୁ ଖାଆନ୍ତି; ଯେତେବେଳେ ଏହାର ବଡ଼ପାଟି ମଧ୍ୟରେ ଖାଦ୍ୟ ପୂର୍ଣ୍ଣ ହୋଇଯାଏ ଏହାର ପାଟି ଆପେ ଆପେ ବନ୍ଦ ହୋଇ ପାଣି ସବୁ ପଦାକୁ ବାହାରିଆସେ ଏବଂ ଖାଦ୍ୟପଦାର୍ଥ ସବୁ ଶରୀର ମଧ୍ୟକୁ ଏହା ଗିଳି ଦିଏ । ଯେଉଁ ତିମିର ଦାନ୍ତ ଥାଏ ସେମାନଙ୍କର ଓଠ ବଡ଼ଟିକାୟ ହୋଇଥାଏ । ଗୋଟିଏ ଦାନ୍ତର ଆକାର ଏକ ଫୁଟ ଲମ୍ବ ଓ ଦଶ ଇଞ୍ଚ ପ୍ରସ୍ଥ ବିଶିଷ୍ଟ ହୋଇଥାଏ । କେତେକଙ୍କର ଉପର ଓ ତଳ ମାଢ଼ିରେ ଦାନ୍ତ ଥାଏ । ଅନ୍ୟ କେତେକଙ୍କର ଖାଲି ତଳ ମାଢ଼ିରେ ଦାନ୍ତ ଥାଏ ।

ନୀଳ ତିମି ପୃଥିବୀ ପୃଷ୍ଠରେ ବାସ କରୁଥିବା ସବୁ ସ୍ତନ୍ୟପାୟୀ ପ୍ରାଣୀଙ୍କଠାରୁ ଆକାରରେ ବଡ଼ । ଏହାର ଦାନ୍ତ ନଥାଏ ମାତ୍ର ଉଭୟ ମାଢ଼ିରେ ତିମି ହାଡ଼ ରହିଥାଏ । ଏହା ଶ୍ୱାସକ୍ରିୟା ବେଳେ ଖୁବ ଜୋରରେ ପବନ ଓ ପାଣି ଉପରକୁ ଛାଡ଼ିଥାଏ । ସ୍ପର୍ମ ତିମିର ମୁଣ୍ଡ ବହୁତ ବଡ଼ ଏବଂ ଏହା ଏକ ବଡ଼ କାଠଗଡ଼ ପରି ଦିଶେ । ଏହି ତିମି ଦେହରୁ ବହୁ ପରିମାଣରେ ତେଲ ଓ ମହମ ମିଳିଥାଏ । ଗୋଟିଏ ତିମି ଦେହରୁ ପ୍ରାୟ ୧୦୦ ବ୍ୟାରେଲ ତେଲ ଓ ୨୪ ବ୍ୟାରେଲ ମହମ ସଂଗ୍ରହ କରାଯାଇଥାଏ । ଏହାର ଲମ୍ବ ପ୍ରାୟ ୭୦ ଫୁଟ ଯାଏ ହୋଇଥାଏ । ଏହାର ବଡ଼ ମୁଣ୍ଡର ତଳ ଭାଗରେ ଏକ ଲମ୍ବା ଓ ଅଣଓସାରିଆ ପାଟିଥାଏ । ତଳ ପାଟିର ମାଢ଼ିରେ ଖୁବ ତୀକ୍ଷ୍ଣ ଦାନ୍ତ ସବୁ ରହିଥାଏ । ନୀଳ ତିମି ପରି ଏହି ଶ୍ରେଣୀର ତିମି ଶ୍ୱାସକ୍ରିୟା ବେଳେ ଉପରକୁ ପାଣି ପବନ ଛାଡ଼ ନଥାନ୍ତି ।

ସାଇଣ୍ଟ ଜାତିର ତିମି ଦେହରୁ ପ୍ରଚୁର ତେଲ ଓ ତିମିହାଡ଼ ମିଳୁଥିବାରୁ ଏହାର ମୂଲ୍ୟ ବହୁତ ବେଶୀ । ତେଣୁ ଏହି ତିମିକୁ ଧରିବାକୁ ସମସ୍ତେ ଆଗ୍ରହ ପ୍ରକାଶ କରିଥାନ୍ତି । ଏମାନଙ୍କର ମୁଣ୍ଡ ବିରାଟକାୟ । ଏପରିକି ସମଗ୍ର ଶରୀରର ଅଧା ହିଁ କେବଳ ମୁଣ୍ଡ । ଏମାନଙ୍କର ତିମି-ହାଡ଼ର ଆକାର ୭।୭ ଫୁଟ ହୋଇଥାଏ ଏବଂ ଏହା ପାଟି ଦେହରେ ଲାଗି ରହିଥାଏ । ଗୋଟିଏ ବୃହତ ତିମିର ପାଟିର ଆକୃତି ଗୋଟିଏ ବଡ଼ ମୋଟର ଗ୍ୟାରେଜ ଠାରୁ ବଡ଼ ହୋଇଥାଏ ।

ବହୁ ଶତାବ୍ଦୀ ଧରି ମଣିଷ ତିମି ଶିକାର କରି ଆସିଛି । ତିମି ଦେହରୁ ମୂଲ୍ୟବାନ ତେଲ ଓ ମହମ ମିଳିଥାଏ । ଏହି ତେଲ ପୂର୍ବେ ଲୋକେ ଆଲୋକ ଜାଳିବାରେ ଓ ଚୋଟେଇ କରିବା ପାଇଁ ବ୍ୟବହାର କରୁଥିଲେ । ବର୍ତ୍ତମାନ ଏହି ତେଲରୁ ମୁଖ୍ୟତଃ ମାର୍ଗାରିନ୍ ପ୍ରସ୍ତୁତ ହେଉଛି ଓ ସାବୁନ ତିଆରି ପାଇଁ ଏହା ବ୍ୟବହୃତ ହେଉଛି । ସ୍ପର୍ମ ତିମିରୁ ମିଳୁଥିବା ତେଲରୁ କଳ କାରଖାନାରେ ତଥା ଅନ୍ୟାନ୍ୟ ବହୁ ସ୍ଥାନରେ ବ୍ୟବହୃତ ହେଉଥିବା ତେଲ, ସୌଖିନ କ୍ରୀମ୍, ଟ୍ରିନେରିନ୍ ପ୍ରଭୃତି ପ୍ରସ୍ତୁତ ହେଉଛି । ପ୍ରଥମ ବିଶ୍ୱଯୁଦ୍ଧ ବେଳେ ନାଇଟ୍ରୋଗ୍ଲିସେରିନ ନିର୍ମାଣ ପାଇଁ ତିମିର ତେଲ ବହୁ ପରିମାଣରେ ଦରକାର ହୋଇଥିଲା । ତେଣୁ ସେତେବେଳେ ବହୁ ସଂଖ୍ୟକ ତିମିଙ୍କୁ ମାରିବାକୁ ପଡ଼ିଥିଲା । ସେତେବେଳେ ଗୋଟିଏ ବର୍ଷରେ କେବଳ ଜର୍ଜିଆ ସାଗରରୁ ବାର ହଜାରରୁ ଅଧିକ ତିମିଙ୍କୁ ମାରି ଦିଆଯାଇଥିଲା । ବର୍ତ୍ତମାନ ତିମିର ବଂଶ କ୍ରମେ କମିବାରେ ଦେଖାଯାଉଛି । ତିମି ଦେହରୁ ବ୍ୟବହାର କରି ପୃଥିବୀର ବିଭିନ୍ନ ସ୍ଥାନରେ ବହୁ ଶିଳ୍ପ କାରଖାନା ଗଢ଼ି ଉଠିଛି ଏବଂ ଏଥିରୁ ବହୁ ପଦାର୍ଥ ତିଆରି ହେଉଛି । ୧୯୨୦ ଖ୍ରୀଷ୍ଟାବ୍ଦରେ ଇଂରାଜୀ ବୈଜ୍ଞାନିକ ଷ୍ଟାନ୍ଲିନ କେମ୍ପ ଓ ଆଲଷ୍ଟର ହାର୍ଡ଼ି "ଡିସ୍କଭରି" ନାମକ ଜାହାଜରେ ପ୍ରାୟ ଆଠ ବର୍ଷ ଯାତ୍ରା କରି ତିମିମାନଙ୍କ ଉପରେ ଗବେଷଣା କରି ବହୁ ଉପାଦେୟ ତଥ୍ୟ ପ୍ରକାଶ କରିଯାଇଛନ୍ତି । ତିମି ଥରକରେ ମାତ୍ର ଗୋଟିଏ ଛୁଆ ଜନ୍ମ କରୁଥିବାରୁ ଓ ପ୍ରତି ଦୁଇବର୍ଷରେ

ଥରେ ଛୁଆ ଜନ୍ମ କରୁଥିବାରୁ ଏହାର ବଂଶ ଦ୍ରୁତ ଗତିରେ ବଢ଼ିପାରେ ନାହିଁ । ଆମେ ଯେଉଁ ପରିମାଣରେ ତିମି ଶୀକାର କରୁଛୁ ସେ ପରିମାଣରେ ତିମିର ବଂଶ ବୃଦ୍ଧି ଘଟୁନଥିବାରୁ ତିମିର ସଂଖ୍ୟା କ୍ରମେ କମି କମି ଯାଉଛି । ପୃଥିବୀର ସବୁ ସାଗରରେ ଏମାନେ ଦେଖାଯାଇଥାନ୍ତି ମାତ୍ର ଥଣ୍ଡା ଅଞ୍ଚଳରେ ରହିବାକୁ ଏମାନେ ବିଶେଷ ଭଲ ପାଇଥାନ୍ତି । ବର୍ତ୍ତମାନଠାରୁ ଏହି ବିରାଟକାୟ ଜନ୍ତୁଙ୍କ ରକ୍ଷା ପାଇଁ ସବୁଆଡ଼ୁ ଆଗ୍ରହ ପ୍ରକାଶ ପାଇବା ଉଚିତ ।



# ଦେହ ସହିତ ଘର

ଆମ ପୃଥିବୀ ପୃଷ୍ଠରେ ଥିବା କେତେକ ପ୍ରାଣୀ ଘର ତିଆରି କରି ସେଥିରେ ରହିଥାନ୍ତି । ଆମେ ମଣିଷ ତଥା ଅନ୍ୟାନ୍ୟ କେତେକ ପ୍ରାଣୀ ଖରା, ବର୍ଷା, ଶୀତରୁ ନିଜକୁ ରକ୍ଷା କରିବା ପାଇଁ ଘର ତିଆରି କରି ସେଥିରେ ରହିଥାଉ । ବିଲୁଆ, କୋକିଶିଆଳି ମାଟିରେ ଗାତ କରି ରହନ୍ତି । ପକ୍ଷୀମାନେ ଗଛରେ ବସା ବାନ୍ଧି ରହନ୍ତି । ଛୋଟ ଘରଚଟିଆ ଚଢ଼େଇ ତାର ଦାନ୍ତରେ କପରି ତାଳଗଛ, ନଡ଼ିଆଗଛରେ ଅତି ସୁନ୍ଦର ବସା ବାନ୍ଧିଥାଏ, ତାହାତ ତୁମେମାନେ ନିଶ୍ଚୟ ଦେଖିଥିବ । ଆମେ ମଣିଷମାନେ ନିଜେ ସୁଖରେ ରହିବା ପାଇଁ କେତେ ବଡ଼ ବଡ଼ ବିଶାଳ-କାୟ କୋଠାଘର ସବୁ ନିର୍ମାଣ କରିଛୁ ତାହା ତୁମେ. ସବୁ ଜାଣିଛ । ଆମେରିକାର ନିଉୟର୍କ ସହରରେ ୧୪୭୨ ଫୁଟ ଉଚ୍ଚତା ବିଶିଷ୍ଟ ଏମ୍ପାୟାର ଷ୍ଟେଟ ବିଲ୍‌ଡ଼ିଂ ପୃଥିବୀର ସବୁଠାରୁ ବଡ଼ କୋଠାଘର । ଘର ସାଧାରଣତଃ ପ୍ରାକୃତିକ ଦୁର୍ବିପାକ, ଖରା, ବର୍ଷାରୁ ଜୀବମାନଙ୍କର ଶରୀରକୁ ରକ୍ଷା କରିଥାଏ ।

ଆମ ପ୍ରାଣୀମାନଙ୍କ ମଧ୍ୟରେ କେତେକଙ୍କର ଘର ନିଜ ଦେହ ସହିତ ଲାଗି ରହିଥାଏ ଏକଥା ତୁମେ ଜାଣିଛ କି ? ପ୍ରକୃତି ଏମାନଙ୍କର କଅଁଳିଆ ଶରୀରକୁ ଖରା, ବର୍ଷା, ପ୍ରାକୃତିକ ବିପର୍ଯ୍ୟୟରୁ ତଥା ଶତ୍ରୁ ଆକ୍ରମଣରୁ ରକ୍ଷା କରିବାପାଇଁ ଏହିପରି ଏକ ଠାଣ ଘର ଏମାନଙ୍କର ଦେହ ଚାରିପାଖରେ ତିଆରି କରିଥାଏ । ଏହି ପ୍ରକାର ଦେହ ସହିତ ଲାଗିରହିଥିବା ଘର ଜୀବ ହେଉଛନ୍ତି ଗେଣ୍ଡା, ଶାମୁକା ପ୍ରଭୃତି । ତୁମେମାନେ ତ ନିଶ୍ଚୟ ଗେଣ୍ଡା, ଶାମୁକାଙ୍କୁ ଦେଖିଥିବ । ଏମାନେ ପୃଥିବୀ ପୃଷ୍ଠରେ ବହୁ ପୁରାତନ ଜୀବ, ବହୁ ଦିନ ଧରି ଏମାନେ ପୃଥିବୀରେ ବାସ କରି ଆସିଛନ୍ତି ଏବଂ ପୃଥିବୀ ପୃଷ୍ଠରେ ଘଟିଯାଇଥିବା ବହୁ ପ୍ରାକୃତିକ ବିପତ୍ତିରୁ ନିଜର କଅଁଳିଆ ଶରୀରକୁ ଘୋଡ଼ାଇରଖିଥିବା କଠିନ ଘର ଦ୍ୱାରା ରକ୍ଷା

କରି ଆସିଛନ୍ତି । ପୃଥିବୀର ସବୁଦେଶର ସମୁଦ୍ର, ନଦୀ, ନାଳ, ପୋଖରୀ, ଶସ୍ୟକ୍ଷେତ୍ରରେ ଏମାନେ ଦେଖାଯାଇଥାନ୍ତି । ଛୋଟଠାରୁ ବଡ଼ ଯାଏ ବିଭିନ୍ନ ଆକୃତିର ଗେଣ୍ଡା ଦେଖାଯାଇଥାନ୍ତି ।ଗେଣ୍ଡା ଯେଉଁଆଡ଼େ ଯାଏ, ତାର ଶରୀରକୁ ସବୁଆଡ଼େ ଘେରି ରହିଥିବା ଟାଣ ଘର ଏହା ସହିତ ଗୃଲଥାଏ । ଶତ୍ରୁକୁ ଦେଖିଲେ ଏମାନଙ୍କର ଶରୀର ତଥା ଅନ୍ୟାନ୍ୟ ଅଂଶ ଟାଣୁଆ ଖୋଳପା ଭିତରକୁ ପଶିଯାଏ ଏବଂ ଏହା ଏକ ନିର୍ଜୀବ ବସ୍ତୁ ପରି ପଡ଼ିରହେ । ଶତ୍ରୁ ଗଲା ପରେ ଏହା ପୁଣି ଗୃଲିବା ଆରମ୍ଭ କରିଥାଏ । ଚେଣ୍ଡାର ଗୋଟିଏ ମାତ୍ର ଗୋଡ଼ । ଏହି ଗୋଡ଼କୁ ଆଗକୁ ବଢ଼ାଇ ଏହା ଆସ୍ତେ ଆସ୍ତେ ଗୃଲିଥାଏ । ଏହି ଗୋଡ଼ ମାଂସଳ ପଦାର୍ଥରେ ତିଆରି । ଏହାର ଆଗରେ ଶୁଣ୍ଢ ଥାଏ । ପୃଥିବୀ ପୃଷ୍ଠରେ ବହୁ ପ୍ରକାରର ଗେଣ୍ଡା ଦେଖାଯାଇଥାନ୍ତି । କେତେକ ଗେଣ୍ଡା ପ୍ରାଣୀ ଦେହରେ ଲାଗିରହି ଏହାର ମାଂସ ଖାଇ ବଞ୍ଚିଥାନ୍ତି ମାତ୍ର ସାଧାରଣତଃ ଅଧିକାଂଶ ନିରାମିଷାଷୀ ଏବଂ ଉଦ୍ଭିଦକୁ ଖାଇ ବଞ୍ଚିଥାନ୍ତି । ଯେଉଁମାନେ ପାଣି ଭିତରେ ସବୁ ବେଳେ ରହିଥାନ୍ତି ସେ ଶ୍ରେଣୀର ଗେଣ୍ଡାଙ୍କର ଶ୍ୱାସକ୍ରିୟା ପାଇଁ ଗାଲିସ୍ ଥାଏ ମାତ୍ର ସ୍ଥଳଭାଗରେ ଥିବା ଗେଣ୍ଡା ଶ୍ୱାସକ୍ରିୟା ସାଧାରଣତଃ ଫୁସ୍‌ଫୁସ୍ ସାହାଯ୍ୟରେ କରିଥାଏ ।



( ଗୃଲୁଥିବା ଗେଣ୍ଡା )

ଶଂଖ ପରି ଦେଖାଯାଉଥିବା ଏକ ଶ୍ରେଣୀର ଗେଣ୍ଡା ସବୁବେଳେ ପୋଖରୀ, ନାଳରେ ରହିଥାଏ ଏବଂ ପୋଖରୀର ଶଯ୍ୟାରୁ ନିଜର ଖାଦ୍ୟ

ସଂଗ୍ରହ କରିଥାଏ ମାତ୍ର ଏହାର ଫୁସ୍‌ଫୁସ୍ ଥିବାରୁ ଶ୍ୱାସକ୍ରିୟା ପାଇଁ ଏହାକୁ ସ୍ଥଳଭାଗକୁ ବା ଜଳାଶୟର ଉପରକୁ ଯିବାପାଇଁ ହୋଇଥାଏ । ଏହି ଶ୍ରେଣୀର ଗେଣ୍ଡାମାନଙ୍କ ବିଶେଷତ୍ୱ ହେଉଛି ଯେ ସେମାନେ ଥିବା ପୋଖରୀରେ ନିମ୍ନଭାଗରୁ ପାଣି ଉପର ଯାଏ ନିଜର ଏକ ସିଡ଼ି ପାଣି ଭିତରେ ତିଆରି କରିଥାନ୍ତି । ଏହି ସିଡ଼ି ପତଳା ସୂତା ପରି ପଦାର୍ଥରେ ଗେଣ୍ଡାହାରା ତିଆରି ହୋଇ ପୋଖରୀର ଶଯ୍ୟାଠାରୁ ପାଣିସ୍ତରର ଉପରି-ଭାଗ ଯାଏ ଲାଗିଥାଏ । ଗେଣ୍ଡା ପାଣି ଉପରକୁ ଆସିବା ବେଳେ ଏହି ସୂତାର ସିଡ଼ି ସାହାଯ୍ୟରେ ଉପରକୁ ଉଠିଆସେ ମାତ୍ର ପୋଖରୀ ଶଯ୍ୟାକୁ ଫେରିବା ବେଳେ ସିଧା ସଳଖ ବୁଡ଼ିଯାଇ ଶଯ୍ୟାରେ ପହଞ୍ଚି-ପାରେ । ଏହି ଶ୍ରେଣୀର ଗେଣ୍ଡା ଏକ ଜେଲି ପରି ପଦାର୍ଥ ମଧ୍ୟରେ ବହୁ ଅଣ୍ଡା ଏକାଥରକେ ଦେଇଥାନ୍ତି । ଅଣ୍ଡାରୁ ଛୁଆ ବାହାରିବା ବେଳେ ଏହାର ଖୋଳପା ଟାଣ ହୋଇ ନଥାଏ । ଶିଶୁ ଗେଣ୍ଡା ବହୁତ ଖାଇ ଖୁବ ଶୀଘ୍ର ଜୋରରେ ବଢ଼େ । ଖୁବ ଶୀଘ୍ର ସେମାନଙ୍କର ଖୋଳପା ଟାଣ ହୋଇ ଶରୀରକୁ ରକ୍ଷା କରିବା ଭଳି ଶକ୍ତି ଧାରଣ କରେ । ଗେଣ୍ଡା ଏହାର ଘର ବା ଖୋଳପାକୁ ଟାଣ କରିବା ପାଇଁ କେତେକ ସ୍ୱତନ୍ତ୍ର ପ୍ରକାର ଖାଦ୍ୟ ଖାଇଥାନ୍ତି ।

ପେରି ଉଇଙ୍କିଲ ଜାତୀୟ ଗେଣ୍ଡା ସବୁବେଳେ ସମୁଦ୍ରର ଲୁଣିପାଣିରେ ରହିଥାଏ । ଏହାର ଆକାର ବହୁତ ଛୋଟ ଓ ଖୋଳପାର ରଙ୍ଗ ସାଧାରଣତଃ ହଳଦିଆ ବା ବାଇଗଣି ହୋଇଥାଏ । ଏମାନେ ସାଧାରଣତଃ ଆଟଲାଣ୍ଟିକ ମହାସାଗରରେ ଦେଖାଯାଇଥାନ୍ତି । ଖୋଳ-ପାର ଉପର ଅଂଶ ଏକ ବୃତ୍ତାକାର କୁଣ୍ଡଳରେ ପରିଣତ ହୋଇଥାଏ ଏବଂ ଏହି କୁଣ୍ଡଳ ସାଧାରଣତଃ ଡାହାଣ ଆଡ଼କୁ ବଳି ରହିଥାଏ । ଶ୍ୱାସକ୍ରିୟା ପାଇଁ ଏହି ଗେଣ୍ଡାର ଖୋଳପା ତଳେ ଏକ ଛୋଟ ରନ୍ଧ୍ର ଥାଏ । ଏହା ସାଧାରଣତଃ ମୃତ ଓ ଜୀବନ୍ତ ବୃକ୍ଷ ଗଛ ଖାଇ ବଞ୍ଚିଥାଏ । ପାଟିର ପଛରେ ଦୁଇ ହଳ ଶୁଣ୍ଢ ଥାଏ ଏବଂ ପଛ ଶୁଣ୍ଢର ଅଗ୍ରଭାଗ ଆଡ଼କୁ ୨ଟି ଆଖି ଥାଏ । ଏହି ଶ୍ରେଣୀର ମାଈ ଗେଣ୍ଡା ପୁରୁଷଠାରୁ ବହୁତ ବଡ଼ ହୋଇଥାଏ । ଏହି ଶ୍ରେଣୀର ଗେଣ୍ଡାର ମାଂସ କେତେକ

ଦେଶର ଲୋକେ ଖାଇଥାନ୍ତି । ସ୍ଥଳଭାଗରେ ଦେଖାଯାଉଥିବା ଗେଣ୍ଡା ଗୁଳି ଯିବାପରେ ଏକ ପ୍ରକାର ପତଳା ତରଳ ପଦାର୍ଥ ସ୍ତର ଯିବା-ବାଟରେ ଚନ୍ଦ୍ର ସ୍ୱରୂପ ରହିଥାଏ । ଅତ୍ୟଧିକ ଗ୍ରୀଷ୍ମ ବା ପ୍ରତିକୂଳ ପାଗହେଲେ ବା କୌଣସି ବିପତ୍ତି ଦେଖାଦେଲେ ଗେଣ୍ଡା ଏହାର ଶରୀରକୁ ଖୋଳପା ମଧ୍ୟରେ ଲୁଚାଇ ରଖି ମାସ ମାସ ରହିପାରେ । ଶୀତଦିନେ ମଧ୍ୟ କେତେକ ଗେଣ୍ଡା ମାଟି ଖୋଳି ତା ଭିତରେ ରହିଥାନ୍ତି ଏବଂ ବର୍ଷା ଦିନେ ପଦାକୁ ବାହାରି ଥାନ୍ତି । ଫ୍ରାନ୍ସ ଓ ସ୍ପେନ ପ୍ରଭୃତି ଦେଶରେ ଗେଣ୍ଡାମାନଙ୍କୁ ଫାର୍ମରେ ବଢ଼ାଯାଇଥାଏ ଏବଂ ଏମାନଙ୍କୁ ମାଂସ ଆକା-ରରେ ବ୍ୟବହାର କରାଯାଇଥାଏ । ଗେଣ୍ଡାର ମାଂସଳ, ନରମ ଶରୀର ଗୁଡ଼ାଏ ଘେରି ରହିଥିବା ଟାଣ ଖୋଳପା ଅନ୍ୟ କିଛି ନୁହେଁ ଏହା ଗେଣ୍ଡାର କଙ୍କାଳ । ଏହା ଦେହରେ ହାଡ଼ ନାହିଁ । ଏହି ଟାଣ ଖୋଳପା ହିଁ ଏକମାତ୍ର ହାଡ଼ ।



# ପିଶାଚ ମାଛ-ଅକ୍ଟୋପସ

ସମୁଦ୍ର ମଧ୍ୟରେ ଦେଖାଯାଉଥିବା ବହୁ ପ୍ରକାର ବିଶାଳ ଜୀବ-ମାନଙ୍କ ମଧ୍ୟରୁ ଅକ୍ଟୋପସ ଅନ୍ୟତମ । ଏହା ଦେଖିବାକୁ ଯେପରି ଭୟଙ୍କର ଏହାର ଆଠୋଟି ହାତର ରୂପ ତାଠାରୁ ଅଧିକ ଭୟଙ୍କର । ଗ୍ରୀକମାନେ ଏହାର ନାମକରଣ କରିଛନ୍ତି ଅକ୍ଟୋପସ ଯାହାର ଅର୍ଥ ଆଠଟି ବାହୁଥିବା ଜନ୍ତୁ । ଏହାର ଗୋଡ଼ ଅଂଶ ଆଠଟି ବାହୁରେ ବିଭକ୍ତ ହୋଇଥାଏ । ପ୍ରତ୍ୟେକ ବାହୁର ତଳ ଅଂଶରେ ଦୁଇଧାଡ଼ି ଶୋଷକ କଣା ରହିଥାଏ ଯାହାକି ଯେ କୌଣସି ପଦାର୍ଥକୁ ଧରିଲେ ଖୁବ୍ ଶକ୍ତଭାବରେ ଉକ୍ତ ଜିନିଷକୁ ଧରି ରଖିବାରେ ଅକ୍ଟୋପସକୁ ସାହାଯ୍ୟ କରିଥାଏ ।

ଅକ୍ଟୋପସ ଶାମୁକା ଜାତୀୟ ଜୀବଙ୍କ ସୃଷ୍ଟି ବୋଲି ଦେଖାଯାଉଛି । ବ୍ୟାଗସଦୃଶ ଏହାର ଶରୀର ଏକ ଚର୍ମଦ୍ୱାରା ଆବୃତ ହୋଇଥାଏ । ଏହାର ଶରୀରର ପଛଭାଗରେ ଏକ କାହାଳୀ ସଦୃଶ କଣା ଥାଏ ଯାହା ବାଟ ଦେଇ ଦରକାର ବେଳେ ଅକ୍ଟୋପସ ଖୁବ୍ ଜୋରରେ ପାଣି ପଛକୁ ଛାଡ଼ି ଥାଏ ଏବଂ ଖୁବ୍ କ୍ଷିପ୍ର ଗତିରେ ଚାଲିଯାଇପାରେ । ଶତ୍ରୁ ଦେଖିଲେ ଏହି ପ୍ରଣାଳୀରେ ଅକ୍ଟୋପସ ଅନ୍ୟାନ୍ୟ ଶତ୍ରୁଠାରୁ ଖୁବ୍ ସହଜରେ ଖସିଯାଇ ପଥର ସନ୍ଧିରେ ବା ଚାଣିଦଳରେ ଲୁଚିଯାଏ ଏବଂ ନିଜକୁ ଶତ୍ରୁ କବଳରୁ ରକ୍ଷାକରେ । ଏହା ବ୍ୟତୀତ ଶତ୍ରୁ ଦେଖିଲେ ଅକ୍ଟୋପସ ନିଜ ଦେହରୁ କଳାରଙ୍ଗର ଏକ ପଦାର୍ଥ ନିର୍ଗତ କରିଥାଏ ଓ ଏହି କଳା ପଦାର୍ଥ ସମୁଦ୍ରର ସେହି ଅଞ୍ଚଳର ଜଳରାଶିକୁ କଳା କରିଦିଏ ଏବଂ ଏହାର ସୁଯୋଗ ନେଇ ଅକ୍ଟୋପସ ସେଠାରୁ ଖସିଯାଇ ଲୁଚିଯାଏ । ଶତ୍ରୁ ଏହାକୁ ଦେଖିପାରେ ନାହିଁ । ଏହା ସମୁଦ୍ରର ନିମ୍ନ ଶଯ୍ୟାରେ ବା ଜଳ ଶଯ୍ୟାରେ ଏହାର ବାହୁକୁ ମଡ଼ାଇ ଆଗକୁ ଆଗକୁ ଚାଲିଥାଏ ଏବଂ ଶାମୁକା, ଗେଣ୍ଡା, କଙ୍କଡ଼ା ଓ ଅନ୍ୟ ଜଳଚର ପ୍ରାଣୀଙ୍କୁ ଏହାର ବାହୁ ସାହାଯ୍ୟରେ ଧରିନେଇ ମୁଣ୍ଡର ତଳଭାଗରେ ଥିବା ପାଟିଦ୍ୱାରା ଖାଇଥାଏ । କଙ୍କଡ଼ା ଏହାର ପ୍ରିୟତମ ଖାଦ୍ୟ । ଏମାନେ ଅତ୍ୟଧିକ ଚାଲାକ । ମା' ଅକ୍ଟୋପସ ଶିଶୁମାନଙ୍କର



( ସମୁଦ୍ର ଶଯ୍ୟାରେ ଅକ୍ଟୋପସ୍ )

ଯତ୍ନ ନେଇଥାଏ । ଏହାର ଅଣ୍ଡା ସାଧାରଣତଃ ଏକପ୍ରକାର ଖୋଳ ମଧ୍ୟରେ ରହିଥାଏ ଏବଂ ପାଣି ଦେହରେ ଅଣ୍ଡା ସବୁ ଯେ କୌଣସି ଏକ ବସ୍ତୁ ସହିତ ଲାଗି ରହିଥାନ୍ତି । ଗୋଟିଏ ସ୍ଥାନରେ ବହୁ ଅଣ୍ଡା ରହିଥାଏ ଓ ମା' ଅକ୍ଟୋପସ ଅଣ୍ଡାକୁ ଜଗି ରହିଥାଏ । ମଝିରେ ମଝିରେ ଏହା ପାଣି ପିଚକାରି ମାରି ଅଣ୍ଡାକୁ ସଫା କରୁଥିବାର ଦେଖାଯାଏ । ଅଣ୍ଡାରୁ ଛୁଆ ବାହାରି ନିଜେ ସକ୍ଷମ ହେବାଯାଏ ମା' ଅକ୍ଟୋପସ ଏହାର ଯତ୍ନ

ନିଏ । ବିଭିନ୍ନ ଅକ୍ଟୋପସ ପରି ଶିଶୁ ଅକ୍ଟୋପସ ମଧ୍ୟ ଘନ ଘନ ସେମାନଙ୍କର ଶରୀରର ରଙ୍ଗ ପରିବର୍ତ୍ତନ କରିପାରନ୍ତି । ଅକ୍ଟୋପସ ଚର୍ମରେ ଥିବା ଏକ ରଙ୍ଗ ପରିବର୍ତ୍ତନକାରୀ କୋଷ ଦ୍ୱାରା ଏହା ପାରିପାର୍ଶ୍ୱିକ ଅବସ୍ଥା ଦେଖି ନିଜର ରଙ୍ଗ ନାଲି, ଧୂସର, ଖଇରିଆ, ହଳଦିଆ, ବାଇଗଣୀ, ନୀଳ, ସବୁଜ ପ୍ରଭୃତି କରିଥାଏ ।

ପୃଥିବୀ ପୃଷ୍ଠରେ ପ୍ରାୟ ୧୪୦ ପ୍ରକାରର ଅକ୍ଟୋପସ ଦେଖାଯାଇଥାନ୍ତି । ପ୍ରାୟ ସବୁ ଅଞ୍ଚଳର ସମୁଦ୍ରରେ ଅକ୍ଟୋପସ ଦେଖାଯାଇଥାଏ । ଏହାର ଲମ୍ବ କେତେ ଇଞ୍ଚରୁ ୭ ଫୁଟ ଯାଏ ହୋଇଥାଏ । ପ୍ରଶାନ୍ତ ମହାସାଗର ଅଞ୍ଚଳରେ ଦେଖାଯାଉଥିବା ଏକ ପ୍ରକାର ରାକ୍ଷସ ଅକ୍ଟୋପସର ଲମ୍ବା ୩୦ ଫୁଟ ଯାଏ ହୋଇଥାଏ । ଏହାର ମୁଣ୍ଡରେ ମଣିଷ ଆଖି ପରି ଦିଶୁଥିବା ଦୁଇଟି ଆଖି ଏହାର ରୂପକୁ ଆହୁରି ଅଧିକ ଭୟଙ୍କର କରିଥାଏ । ଏହାର ଦୃଷ୍ଟିଶକ୍ତି ଅତି ପ୍ରଖର ।

ଅକ୍ଟୋପସର ଭୀଷଣତା ସମ୍ପର୍କରେ ବହୁ କାହାଣୀ ପ୍ରଚଳିତ ଅଛି । ଏହା ମଣିଷକୁ ଆକ୍ରମଣ କରେ ବୋଲି କେତେକ ମତ ଦେଇଥାନ୍ତି ଏବଂ ଏହି ଜୀବ ରହୁଥିବା ସମୁଦ୍ର ମଧ୍ୟକୁ ପ୍ରବେଶ କରିବାକୁ ଭୟ କରିଥାନ୍ତି । ମାତ୍ର କେତେକ ବିଶାଳ ଅକ୍ଟୋପସ ବ୍ୟତୀତ ଅନ୍ୟ ଶ୍ରେଣୀର ଅକ୍ଟୋପସ ମାରାତ୍ମକ ନୁହେଁ । ଏମାନଙ୍କୁ ସହଜରେ ଧରିପାରେ । ଚୀନ, ଗ୍ରୀସ, ଇଟାଲୀ, ପ୍ରଭୃତି କେତେକ ଦେଶର ଲୋକମାନେ ଅକ୍ଟୋପସକୁ ଖାଦ୍ୟ ଆକାରରେ ବ୍ୟବହାର କରିଥାଆନ୍ତି । ଅମେରୁଦଣ୍ଡୀ ପ୍ରାଣୀମାନଙ୍କ ମଧ୍ୟରେ ଏହା ଏକ ବୃହତ୍ତର ଜୀବ ।

ବୈଜ୍ଞାନିକମାନେ ଏବେ ଅକ୍ଟୋପସ ଦେହରୁ ଏକ ପ୍ରକାର ବହୁ ଦରକାରୀ ଔଷଧ ବାହାର କରିଛନ୍ତି ଯାହାକି ହୃଦରୋଗର ଚିକିତ୍ସା ପାଇଁ ବ୍ୟବହୃତ ହେଉଛି ଏବଂ ଭଲ ଫଳ ଦେଉଛି । ଏହାର କଦାକାର ଭୀଷଣ ରୂପ ଦେଖି ଲୋକମାନେ ଏହାକୁ ପିଶାଚ ମାଛ ନାମ ଦେଇଥିଲେ ମଧ୍ୟ ପ୍ରକୃତରେ ଏହା ଭୟଙ୍କର ପିଶାଚ ନୁହେଁ—ଏକ ସାଧାରଣ ଜଳଚର ପ୍ରାଣୀ ଏବଂ ମଣିଷର ଉପକାରୀ ।

●

# ପୃଥିବୀ ପୃଷ୍ଠର କ୍ଷୁଦ୍ରତମ ଉଦ୍ଭିଦ

ପୃଥିବୀ ପୃଷ୍ଠରେ ଥିବା ଉଦ୍ଭିଦମାନଙ୍କ ମଧ୍ୟରେ ସବୁଠାରୁ କ୍ଷୁଦ୍ରତମ କିଏ ? ପୃଥିବୀ ପୃଷ୍ଠରେ ଦେଖାଯାଉଥିବା ବଡ଼ ବଡ଼ ଉଦ୍ଭିଦମାନଙ୍କ ବିଷୟରେ ତୁମେମାନେ ହୁଏତ ଜାଣିଥିବ । ଆମେରିକାର କାଲିଫର୍ଣ୍ଣିଆ, ଭାରତର ଉତ୍ତରାଞ୍ଚଳ ଓ ଅନ୍ୟାନ୍ୟ ଦେଶରେ ଦେଖାଯାଉଥିବା ସିକୋଆ, ରେଡ଼ଉଡ଼ ପ୍ରଭୃତି ଗଛ ବିରାଟକାୟ ଗଛମାନଙ୍କ ମଧ୍ୟରୁ ଅନ୍ୟତମ । ସିକୋଆ ଗଛର ଉଚ୍ଚତା ୪୦ରୁ ୫୦ ଫୁଟ ଯାଏ ହୋଇଥାଏ । ଏହା ପୃଥିବୀ ପୃଷ୍ଠର ସବୁଠାରୁ ପୁରାତନ ବୃକ୍ଷ । କେତେକ ବୃକ୍ଷର ବୟସ ତିନି ହଜାର ବର୍ଷରୁ ଅଧିକ । କଲମ୍ବସ ଆମେରିକା ଆବିଷ୍କାର କରିବା ସମୟରୁ ମଧ୍ୟ କେତେକ ସିକୋଆ ଗଛ ଆଜିଯାଏ ବଞ୍ଚି ରହିଛନ୍ତି । ଏମାନଙ୍କ ବ୍ୟତୀତ ଆହୁରି ବହୁ ବିରାଟକାୟ ଉଦ୍ଭିଦ ପୃଥିବୀର ବିଭିନ୍ନ ଅଞ୍ଚଳରେ ଦେଖାଯାଇଥାନ୍ତି ।

ମାତ୍ର ପୃଥିବୀର ସବୁଠାରୁ କ୍ଷୁଦ୍ରତମ ଉଦ୍ଭିଦ କିଏ ? ଏହି ଉଦ୍ଭିଦ ଆମ ସମସ୍ତଙ୍କ ନିକଟରେ ଅଛି, ଆମର ନିଶ୍ୱାସ ପ୍ରଶ୍ୱାସରେ ଆମ ଦେହ ଭିତରକୁ ଯାଉଛି, କୋଟି କୋଟି ସଂଖ୍ୟାରେ ପବନରେ ଭାସିବୁଲୁଛି । ପାଣି, ପବନ, ମାଟି, ଖାଦ୍ୟ ପଦାର୍ଥ, ଫଳ, ପଶୁପକ୍ଷୀ ସବୁରି ଦେହରେ ଏହି ଉଦ୍ଭିଦ ଲାଗି ରହିଛି । ଗୋଟିଏ ବୁନ୍ଦା ପାଣିରେ ହଜାର ହଜାର ଏହି ଉଦ୍ଭିଦ ମଧ୍ୟ ରହି ପାରନ୍ତି । ପ୍ରତ୍ୟେକ ପ୍ରାଣୀର ଖାଦ୍ୟ ନଳୀ, ଅନ୍ତଃନଳୀରେ ବହୁ ସଂଖ୍ୟାରେ ଏହି ଉଦ୍ଭିଦ ଥିବାର ଦେଖାଯାଏ । ପୂର୍ବେ ଏମାନଙ୍କୁ ଏକ ପ୍ରାଣୀ ବୋଲି ଲୋକମାନେ ଭାବୁଥିଲେ ମାତ୍ର ଏମାନେ ପ୍ରକୃତରେ ଉଦ୍ଭିଦ । ଖାଲିଆଖିରେ ଆମେ ଏମାନଙ୍କୁ ଦେଖିପାରୁ ନଥିବାରୁ ଏମାନେ ଆମର ଆଗରେ ଏତେ କାମ କରି ଯାଉଛନ୍ତି । ଏମାନେ ହେଲେ ବ୍ୟାକ୍‌ଟେରିଆ । ହଲାଣ୍ଡ ଦେଶର ଆଣ୍ଟୋନୀ ଲିଉନହୁକ ୧୬୮୩ ଖ୍ରୀଷ୍ଟାବ୍ଦରେ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ବ୍ୟାକ୍ଟେରିଆକୁ ଆବିଷ୍କାର କରିଥିଲେ । ଫରାସୀ ବୈଜ୍ଞାନିକ ଲୁଇସ

ପାସ୍ତୁର ବ୍ୟାକ୍ଟେରିଆ ବିଷୟରେ ବହୁ ଗବେଷଣା କରିଥିଲେ ଏବଂ ଟୀକାର ଆବିଷ୍କାର କରି ବହୁ ଅକାଳ ମୃତ୍ୟୁକୁ ବନ୍ଦ କରି ଦେଇ ପାରିଥିଲେ ।



ବ୍ୟାକ୍ଟେରିଆ

ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଦେଖିଲେ ବିଭିନ୍ନ ଆକାରର ଏକକୋଷୀ ବ୍ୟାକ୍ଟେରିଆ ଦେଖାଯାଇଥାନ୍ତି । ଏହା ଏକ ଏକକୋଷୀ ଉଦ୍ଭିଦ । କେତେକଙ୍କର ଆକାର ଅଣ୍ଡା ପରି, କେତେକ ଗୋଲାକାର ଲମ୍ବା, ପୁଣି ଅନ୍ୟ କେତେକ ଦଉଡ଼ି ପରି ମୋଡ଼ି ମୋଡ଼ି ହୋଇ ବା କମା ପରି ହୋଇଥିବାର ଦେଖାଯାଇଥାଏ । ଏହି କୋଷ ଦେହରେ ଲମ୍ବା ଲମ୍ବା ସୂତାପରି ପଦାର୍ଥ ଥାଏ । ପ୍ରାୟ ଦୁଇ ହଜାର ପ୍ରକାରର ବ୍ୟାକ୍ଟେରିଆ ଆମ ପୃଥିବୀ ପୃଷ୍ଠରେ ଦେଖାଯାଇଥାଏ । ଏମାନଙ୍କ କୋଷରେ କୋଷର ମୁଖ୍ୟ ଅଂଶ ନ୍ୟୁକ୍ଲିୟସ ପରିବର୍ତ୍ତେ ଅସ୍ପଷ୍ଟ ନ୍ୟୁକ୍ଲିୟସ ଥାଏ । ଏହି ଉଦ୍ଭିଦ ଖୁବ୍ କମ୍ ସମୟ ମଧ୍ୟରେ ଅତି ଦ୍ରୁତ ଗତିରେ ସଂଖ୍ୟା ବଢ଼ାଇପାରେ । ପ୍ରାୟ ୮ ଘଣ୍ଟା ମଧ୍ୟରେ ଗୋଟିଏ ବ୍ୟାକ୍ଟେରିଆରୁ ଚାରି ହଜାରରୁ ଅଧିକ ବ୍ୟାକ୍ଟେରିଆର ସୃଷ୍ଟି ହୋଇଥାଏ । ଏତେ ଶୀଘ୍ର ପୃଥିବୀ ପୃଷ୍ଠର କୌଣସି ଉଦ୍ଭିଦ ସେମାନଙ୍କର ସଂଖ୍ୟା ବୃଦ୍ଧି କରିପାରେ ନାହିଁ । ବିଭିନ୍ନ ଉପାୟରେ ଏମାନେ ସଂଖ୍ୟା

ବୃଦ୍ଧି କରଥାନ୍ତି । ମୂଳ ବ୍ୟାକ୍ଟେରିଆ କୋଷ ଖଣ୍ଡଖଣ୍ଡ ହୋଇ କ୍ରମାଗତ ବଢ଼ି ବଢ଼ି ସଂଖ୍ୟା ପ୍ରାପ୍ତ ବଢ଼ାଇଥାଏ । ଅନ୍ୟାନ୍ୟ ଉଦ୍ଭିଦଙ୍କ ପରି ଏହି ଏକକୋଷୀ ଉଦ୍ଭିଦ ଦେହରେ ସବୁଜକଣା ନଥିବାରୁ ଏମାନେ ନିଜେ ନିଜପାଇଁ ଖାଦ୍ୟ ପ୍ରସ୍ତୁତ କରିପାରନ୍ତି ନାହିଁ । ତେଣୁ ସେମାନେ ଖାଦ୍ୟ ପାଇଁ ଅନ୍ୟ ଉପରେ ମୁଖ୍ୟତଃ ନିର୍ଭର କରଥାନ୍ତି । ଅଧିକାଂଶ ମୃତ ଶରୀର ଉପରେ ଖାଦ୍ୟପାଇଁ ନିର୍ଭର କରଥାନ୍ତି । ଅନ୍ୟ କେତେକ ବ୍ୟାକ୍ଟେରିଆ ନିଜ ପାଇଁ କେତେକାଂଶରେ ଖାଦ୍ୟ ପ୍ରସ୍ତୁତ କରିପାରନ୍ତି । ସେମାନଙ୍କ ଦେହରେ ଖାଦ୍ୟ ପ୍ରସ୍ତୁତ କରିବା ପାଇଁ ଏକ ପ୍ରକାର କଣିକା ଥାଏ । ବ୍ୟାକ୍ଟେରିଆ ସାଧାରଣତଃ ଜୀବନ୍ତ ଓ ମୃତ ପ୍ରାଣୀ ଓ ଉଦ୍ଭିଦ ଉଭୟଙ୍କ ଦେହରେ ପଶି ନିଜ ଦେହରୁ ଏକ ପ୍ରକାର ଏଞ୍ଜାଇମି ବା ପାଚକରସ ସୃଷ୍ଟି କରି ଖାଦ୍ୟ ହଜମ କରାଇ ନିଜେ ଖାଦ୍ୟ ଗ୍ରହଣ କରଥାନ୍ତି ।



ବିଭିନ୍ନ ଶ୍ରେଣୀର ବ୍ୟାକ୍ଟେରିଆ

ବ୍ୟାକ୍ଟେରିଆମାନଙ୍କ ମଧ୍ୟରୁ ଅନେକ ଆମର ବନ୍ଧୁ । କେତେକ ମଧ୍ୟ ଭୟଙ୍କର ରୋଗ ସୃଷ୍ଟି କରଥାନ୍ତି । ଏମାନେ କୌଣସି କ୍ଷତସ୍ଥାନ ଦେଇ ବା ନିଶ୍ୱାସ ପ୍ରଶ୍ୱାସରେ କିମ୍ବା ଖାଦ୍ୟ ପଦାର୍ଥ ଦେଇ ମଣିଷ, ଅନ୍ୟାନ୍ୟ ପ୍ରାଣୀ ଓ ଉଦ୍ଭିଦର ଶରୀର ମଧ୍ୟକୁ ପଶିଥାନ୍ତି ଏବଂ ଶରୀରରେ କୋଷ ଗୁଡ଼ିକୁ ଭାଙ୍ଗି ନଷ୍ଟକରି ନିଜ ଦେହରୁ ବିଷାକ୍ତ ପଦାର୍ଥ ନିର୍ଗତ

କରାଇ ବିଭିନ୍ନ ମାରାତ୍ମକ ରୋଗ ସୃଷ୍ଟି କରିଥାନ୍ତି । ବ୍ୟାସିଲସ ଟାଇଫୋସ ନାମକ ବ୍ୟାକ୍ଟେରିଆ ଟାଇଫଏଡ଼ ଜ୍ୱର, ଟିଟାନି ନାମକ ବ୍ୟାକ୍ଟେରିଆ ଟିଟାନସ, କ୍ଲୋଷ୍ଟ୍ରୋଡ଼ିୟମ ନାମକ ବ୍ୟାକ୍ଟେରିଆ ଖାଦ୍ୟ-ପଦାର୍ଥକୁ ବିଷାକ୍ତ କରିବା, ଡିପ୍‌ଥେରିଆ ନାମକ ବ୍ୟାକ୍ଟେରିଆ ଡିପ୍‌ଥେରିଆ ରୋଗ, ଟିଉବର କୁଲେସିସ ନାମକ ବ୍ୟାକ୍ଟେରିଆ ଯକ୍ଷ୍ମାରୋଗ, ମାଇକୋବ୍ୟାକ୍ଟିରିୟମ ଲେପ୍ରା କୁଷ୍ଠରୋଗ, ଡିସେଣ୍ଟେରିଆ, ଆମାଶୟ ରୋଗ ଓ ଡିପ୍ଲୋକୋକସ ବ୍ୟାକ୍ଟେରିଆ ଆନ୍ତ୍ରିକ ଜ୍ୱର, ଭିବ୍ରିଓ କଲେରିଆ, ହଇଜା ପ୍ରଭୃତି ମାରାତ୍ମକ ରୋଗ ମଣିଷ ଦେହରେ ସୃଷ୍ଟି କରିଥାନ୍ତି । ସେହିପରି କେତେକ ପରଜୀବୀ ବ୍ୟାକ୍ଟେରିଆ ଲେମ୍ବୁ, ଧୂଆଁ-ପତ୍ର, କୋବି, ସେଓ, ଆଳୁ ଓ ଅନ୍ୟାନ୍ୟ ବହୁ ଉଦ୍ଭିଦକୁ ଆକ୍ରମଣ କରି ବହୁ ରୋଗ ଏମାନଙ୍କ ଦେହରେ ସୃଷ୍ଟି କରିଥାନ୍ତି ଓ ଗଛର କାଣ୍ଡ, ମୂଳ, ପତ୍ର ସବୁକୁ ଆକ୍ରମଣ କରି ଶେଷରେ ଗଛକୁ ମାରିଦେଇଥାନ୍ତି । କେତେକ ବ୍ୟାକ୍ଟେରିଆ ଆମେ ପ୍ରସ୍ତୁତ କରି ରଖିଥିବା ଖାଦ୍ୟ ପଦାର୍ଥ, ମାଂସ, ଦୁଧ, ପନିପରିବା, ଫଳ ଇତ୍ୟାଦିକୁ ନଷ୍ଟ କରି ଦେଇଥାଆନ୍ତି । ଏସବୁ ସତ୍ତ୍ୱେ ଅଧିକାଂଶ ବ୍ୟାକ୍ଟେରିଆ ମାନବ ସମାଜର ତଥା ଜୀବ-ଜଗତର ପରମ ଉପକାରୀ ବନ୍ଧୁ । ବ୍ୟାକ୍ଟେରିଆ ହିଁ ପୃଥିବୀ ପୃଷ୍ଠର ସବୁ ମୃତ ଶରୀରକୁ ନଷ୍ଟ କରିଥାଏ ଏବଂ ମୃତ ଦେହରେ ଥିବା ଯୌଗିକ ପଦାର୍ଥକୁ ସରଳ ନାଇଟ୍ରେଟସ, ସଲଫେଟ ପ୍ରଭୃତି ସରଳ ପଦାର୍ଥରେ ପରିଣତ କରି ମାଟିକୁ ଉର୍ବର କରିଥାଏ । ଅନ୍ୟ ଉଦ୍ଭିଦ ଏହି ସବୁ ଖାଦ୍ୟ ମାଟିରୁ ଗ୍ରହଣ କରି ବଞ୍ଚିଥାନ୍ତି । ଯଦି ବ୍ୟାକ୍ଟେରିଆ ନଥାନ୍ତା ତେବେ ପୃଥିବୀ ପୃଷ୍ଠରେ କୌଣସି ମୃତ ଦେହ ନଷ୍ଟ ନହୋଇ ସେହିପରି ଭାବରେ ପଡ଼ି ରହିଥାନ୍ତା ଏବଂ ଏକ ବିରାଟ ଅଞ୍ଚଳରେ ଏହି ମୃତଦେହ ପଡ଼ି ରହି ଏକ ଅସ୍ୱାଭାବିକ ଅବସ୍ଥା ସୃଷ୍ଟି କରୁଥାନ୍ତା । ଏହା ବ୍ୟତୀତ ମାଟିରେ ଥିବା ରାଇଜୋବିୟମ ନାମକ ଏକ ବ୍ୟାକ୍ଟେରିଆ ମୁଗ, ବିରି, ପ୍ରଭୃତି କେତେକ ଗଛର ଚେର ମାଟିରୁ ବାୟୁରେ ଥିବା ନାଇଟ୍ରୋଜେନକୁ ସଂଯୋଗ କରିବାରେ ସାହାଯ୍ୟ କରିଥାଏ । କେତେକ ବ୍ୟାକ୍ଟେରିଆ ମାଟିର ବହୁ ପରିବର୍ତ୍ତନ ଘଟାଇ ଏହାକୁ ଉର୍ବର କରିଥାନ୍ତି । ଶିଳ୍ପ-କାରଖାନାରେ ବହୁ କ୍ଷେତ୍ରରେ ବ୍ୟାକ୍ଟେରିଆ ସାହାଯ୍ୟ କରିଥାନ୍ତି ।

କେତେକ ଔଷଧ ବ୍ୟାକ୍ଟେରିଆରୁ ତିଆରି ହୋଇଥାଏ । ପେନ୍‌ସିଲିୟମ୍ ନୋଟାଟମ ନାମକ ବ୍ୟାକ୍ଟେରିଆ ଦେହରୁ ପେନ୍‌ସିଲିନ ଓ ଷ୍ଟ୍ରେପଟୋମାଇସିସ ଗ୍ରୀସିୟସରୁ ଷ୍ଟ୍ରେପଟୋମାଇସିନ ଭଳି ଜୀବନରକ୍ଷାକାରୀ ଦରକାରୀ ଔଷଧ ତିଆରି ହୋଇ ଲକ୍ଷ ଲକ୍ଷ ଜୀବନ ରକ୍ଷା କରିପାରିଛି । ଏହା ବ୍ୟତୀତ ନିମୋନିଆ, ହଇଜା, ଘାଆ, ଯକ୍ଷ୍ମା, ଟାଇଫଏଡ଼ ପ୍ରଭୃତି ରୋଗ ବ୍ୟାକ୍ଟେରିଆ ଦ୍ୱାରା ହେଉଥିଲେ ମଧ୍ୟ କେତେକ ବ୍ୟାକ୍ଟେରିଆରୁ ଏହାର ପ୍ରତିଷେଧକ ଔଷଧ ତିଆରି କରାଯାଇଛି । ମଣିଷ ଶରୀର ମଧ୍ୟରେ ଥିବା କେତେକ ବ୍ୟାକ୍ଟେରିଆ ଅନେକ ସମୟରେ ଶରୀରରେ ରୋଗ ପ୍ରତିଷେଧକ ଶକ୍ତିରୂପେ କାମ କରିଥାନ୍ତି ଏବଂ ବହୁ ମାରାତ୍ମକ ରୋଗରୁ ମଣିଷ ଶରୀରକୁ ରକ୍ଷା କରି ଏକ ସୁସ୍ଥ ଜୀବନ ଯାପନ କରିବାରେ ମଣିଷକୁ ସାହାଯ୍ୟ କରିଥାନ୍ତି । କେତେକ ମାରାତ୍ମକ ବ୍ୟାକ୍ଟେରିଆଠାରୁ ଆମକୁ ନିଜକୁ ରକ୍ଷା କରିବାକୁ ହେଲେ ଆମେ ସର୍ବଦା ନିଜେ ସଫା ସୁତୁରା ରହିବା ଆବଶ୍ୟକ ଏବଂ ପରିଷ୍କାର ଖାଦ୍ୟ ଖାଇବା ଉଚିତ । ଗରମ ଖାଦ୍ୟରେ ବ୍ୟାକ୍ଟେରିଆ ନଥାନ୍ତି । ସେହିପରି ରେଫ୍ରିଜରେଟରରେ ଥିବା ଥଣ୍ଡା ଖାଦ୍ୟରେ ମଧ୍ୟ ବ୍ୟାକ୍ଟେରିଆ ଦେଖାଯାଆନ୍ତି ନାହିଁ । ଶୁଖିଲା ସ୍ଥାନରେ ମଧ୍ୟ ବ୍ୟାକ୍ଟେରିଆ ବିଶେଷ ବଢ଼ି ପାରନ୍ତି ନାହିଁ ।

ପୃଥିବୀର ଏହି କ୍ଷୁଦ୍ରତମ ଉଦ୍ଭିଦ ଅପକାର ବ୍ୟତୀତ ଆମର ବହୁ ଉପକାର ସାଧନ କରିଥାଏ । ବ୍ୟାକ୍ଟେରିଆ ବ୍ୟତୀତ ଏକ ସୁସ୍ଥ ପୃଥିବୀ ଓ ଜୀବଜଗତ ତିଷ୍ଠି ରହିବା କଳ୍ପନା କରାଯାଇ ନପାରେ ।



# ଘରେ ଥିବା ବିଷଧର ଜୀବ

ଆମ ପୃଥିବୀ ପୃଷ୍ଠରେ ବାସ କରୁଥିବା ହଜାର ହଜାର ପ୍ରକାରର ପ୍ରାଣୀମାନଙ୍କ ମଧ୍ୟରୁ କେତେକ ଅତି ସାଧାସିଧା ଏବଂ ସାଧାରଣ ଭାବରେ ଜୀବନ ବିତାଇ ଥାଆନ୍ତି । ମାତ୍ର ଅନ୍ୟ କେତେକ ପ୍ରାଣୀ କ୍ଷୁଦ୍ରହେଲେ ମଧ୍ୟ ଅତି ହିଂସ୍ର । ସେମାନେ ଅନ୍ୟ ପ୍ରାଣୀମାନଙ୍କୁ ନିଜ ଦେହରୁ ବାହାରୁଥିବା ବିଷାକ୍ତ ପଦାର୍ଥ ସାହାଯ୍ୟରେ ମାରି ନିଜର ଖାଦ୍ୟ ରୂପେ ବ୍ୟବହାର କରିଥାନ୍ତି । ସାପ ବିଷୟରେ ତ ଆମେ ସମସ୍ତେ କିଛି ଅଧିକେ ଜାଣିଛେ । ସାପୁଆ କେଳା ସାପର ବିଷ ଦାନ୍ତ ଭାଙ୍ଗି ତାକୁ ଆଣି ଖେଳାଉଥିବା ବେଳେ ଏହା ରାଗି ସାପୁଆ କେଳାକୁ କପର ଚୋଟ ମାରିଥାଏ ତାହା ତ ତୁମ୍ଭେମାନେ ସବୁ ଦେଖିଥିବ । ବିଷାକ୍ତ ସାପର ବିଷ ମଣିଷର ରକ୍ତରେ ମିଶିଲେ ମଣିଷର ମୃତ୍ୟୁ ଘଟିଥାଏ ।

ସାପ ସାଧାରଣତଃ ଜଙ୍ଗଲ, ବୁଦା, ବିଲ, ବାଡ଼, ଗାତରେ ରହିଥାଏ । ଆମେ ଦେଖୁଥିବା ସାପମାନଙ୍କ ମଧ୍ୟରେ ସମସ୍ତେ ବିଷାକ୍ତ ନୁହଁନ୍ତି । ଧଣ୍ଡ, ଡେମଣା, ଅଜଗର ପ୍ରଭୃତି ସାପ ଦେହରେ ବିଷ ନଥାଏ । ଆମ ଦେଶରେ ତଥା ପୃଥିବୀର ବହୁ ଦେଶରେ ପ୍ରତିବର୍ଷ ହଜାର ହଜାର ଲୋକ ସାପ କାମୁଡ଼ାରେ ପ୍ରାଣ ତ୍ୟାଗ କରିଥାନ୍ତି । ଆଫ୍ରିକା ମହାଦେଶରେ ବହୁ ବିଷଧର ସର୍ପ ଦେଖାଯାଇ ଥାଆନ୍ତି । ମାତ୍ର ନ୍ୟୁଜିଲାଣ୍ଡ ଦେଶରେ ଆଦୌ ସାପ ନାହାଁନ୍ତି । ଆମ ଓଡ଼ିଶାରେ ଦେଖାଯାଉଥିବା ନାଗ, ଚନ୍ଦ୍ର, ଗୋଖର, ଅହିରାଜ ପ୍ରଭୃତି ବିଷଧର ସର୍ପ । ଏମାନେ ଜଙ୍ଗଲରେ ଓ ବିଲ ବାଡ଼ରେ ସାଧାରଣତଃ ଦେଖାଯାଇଥାନ୍ତି ।

ସାପ ବ୍ୟତୀତ ଅନ୍ୟ ଏକ ବିଷଧର ପ୍ରାଣୀ ଆମ ଘରେ, ଅନ୍ଧାର ଜାଗାରେ, ଅପରିଷ୍କାର ଅପରିଚ୍ଛନ୍ନ ଓଦାଳିଆ ଜଳବାୟୁରେ ବାସ

କରିଥାଏ । ଏହାର ବିଷ ସାପ ଠାରେ ବିଷାକ୍ତ । ଏହା କଏ ଜାଣିଛ କି ?
ଏହା ହେଉଛି କଙ୍କଡ଼ା ବିଛା । ପୃଥିବୀ ପୃଷ୍ଠରେ ଦେଖାଯାଉଥିବା ପ୍ରାୟ




ସମସ୍ତ କଙ୍କଡ଼ାବିଛା ବିଷାକ୍ତ ଅଟନ୍ତି । ଆରିଜୋନାରେ ଗତ ୨୦ ବର୍ଷର ହିସାବରୁ ଦେଖାଯାଇଛନ୍ତି ଯେ ଏଠାରେ ଯେତେଲୋକ ଏହି ସମୟ ମଧ୍ୟରେ ବିଷାକ୍ତ କୀଟ କାମୁଡ଼ିବା ଦ୍ୱାରା ପ୍ରାଣତ୍ୟାଗ କରିଛନ୍ତି ସେମାନଙ୍କ ମଧ୍ୟରୁ ଶତକଡ଼ା ୬୮ ଭାଗ ଲୋକ କେବଳ କଙ୍କଡ଼ାବିଛା କାମୁଡ଼ିବା ଦ୍ୱାରା ହିଁ ମୃତ୍ୟୁ ବରଣ କରିଛନ୍ତି ।

କଙ୍କଡ଼ାବିଛା ପୃଥିବୀର ପ୍ରାୟ ସବୁ ଅଞ୍ଚଳରେ ଦେଖାଯାଇଥାନ୍ତି । ଗ୍ରୀଷ୍ମ ମଣ୍ଡଳରେ ଶୁଖିଲା ଜଳବାୟୁରେ ଏମାନେ ବାସ କରିବାକୁ ଭଲ ପାଆନ୍ତି । ଗ୍ରୀଷ୍ମ ମଣ୍ଡଳ ଦେଶମାନଙ୍କରେ ଏମାନେ ଦେଖାଯାଉଥିଲେ ମଧ୍ୟ ଥଣ୍ଡା, ବରଫ ପଡୁଥିବା ଦକ୍ଷିଣ ଓ ଉତ୍ତର ଗୋଲାର୍ଦ୍ଧର ବିଭିନ୍ନ ଅଞ୍ଚଳରେ ମଧ୍ୟ ଦେଖାଯାଇଥାନ୍ତି । ଦକ୍ଷିଣ ଆମେରିକା, କାନାଡ଼ା, ଭୂମଧ୍ୟସାଗର ଅଞ୍ଚଳ, ଆଫ୍ରିକା, ମାଡ଼ାଗାସ୍କର, ମଧ୍ୟ ପ୍ରାଚ୍ୟ ଦେଶ ସମୂହ, ଅଷ୍ଟ୍ରେଲିଆ, ଏସିଆ ମହାଦେଶ ପ୍ରଭୃତି ପୃଥିବୀର ପ୍ରାୟ ସବୁ ଦେଶରେ ଏମାନେ ଦେଖାଯାଉଥିଲେ ମଧ୍ୟ ସାପମାନଙ୍କ ପରି ନ୍ୟୁଜିଲାଣ୍ଡ ଦେଶରେ କଙ୍କଡ଼ା-

ବସ୍ତୁ ଆଦୌ ଦେଖାଯାଆନ୍ତି ନାହିଁ । ଏମାନେ ଆଲୋକ ପ୍ରିୟ ହୋଇ-ନଥିବାରୁ ଦିନବେଳେ ଅନ୍ଧାରୁଆ ସ୍ଥାନରେ ଲୁଚିରହି ରାତି ହେଲେ ପଦାକୁ ବାହାରି ଥାଆନ୍ତି ଏବଂ ଖାଦ୍ୟ ଅନ୍ୱେଷଣ କରିଥାଆନ୍ତି ।

ବହୁ ଲୋକେ ଏମାନଙ୍କୁ କୀଟ ପତଙ୍ଗ ଶ୍ରେଣୀର ଭାବୁଥିଲେ ମଧ୍ୟ ଏମାନେ ପ୍ରକୃତରେ କୀଟ ପତଙ୍ଗ ଶ୍ରେଣୀର ନୁହଁନ୍ତି । ଏମାନେ ସାଧାରଣତଃ ବୁଢ଼ିଆଣୀ ଜାତିର ଜୀବ । ବୁଢ଼ିଆଣୀ ପରି ଏହାର ମଧ୍ୟ ଆଠୋଟି ଗୋଡ଼ ରହିଛି । ଚାରି ହଳ ଗୋଡ଼ ବ୍ୟତୀତ କଙ୍କଡ଼ା ପରି ଏକ ହଳ ବଡ଼ ବୁଢ଼ା ଗୋଡ଼ ରହିଛି । ଏହି ବୁଢ଼ା ଗୋଡ଼ ସାହାଯ୍ୟରେ କଙ୍କଡ଼ାବିଛା ସାଧାରଣତଃ ତାହାର ଖାଦ୍ୟକୁ ଧରିଥାଏ । ଏହାର ଲମ୍ବା ଲାଞ୍ଜ କେତେଗୁଡ଼ିଏ ଛୋଟ ଛୋଟ ଖଣ୍ଡ ସଂଯୁକ୍ତ ହୋଇ ସୃଷ୍ଟି ହୋଇ-ଥାଏ । ଲାଞ୍ଜର ଶେଷ ଭାଗରେ ଏକ ମୁନିଆଁ ନଖ ଥାଏ ଯାହାକି ବିଷ ଥଳୀ ସହିତ ସଂଯୁକ୍ତ ହୋଇ ରହିଥାଏ । କଙ୍କଡ଼ାବିଛା ଚାଲୁଥିବାବେଳେ ଏହାର ଲାଞ୍ଜ ବଙ୍କା ହୋଇ ଏହାର ଦେହ ଉପରେ ରହିଥାଏ, ମାତ୍ର ଏହା ଯେତେବେଳେ କୀଟ ପତଙ୍ଗ, ଛୋଟମୂଷା, ଏଣ୍ଡୁଅ, ପୋକ ପ୍ରଭୃତିଙ୍କୁ ଦେଖେ ଏହାର ଲାଞ୍ଜ ଅଗ୍ରଭାଗରେ ଥିବା ମୁନିଆଁ ନଖକୁ ଖାଦ୍ୟ ଦେହରେ ଫୋଡ଼ିଦିଏ ଏବଂ ଏହାର ବିଷ ପ୍ରକ୍ରିୟାରେ ଜୀବଟି ମରିଗଲାପରେ ସେ ଏହାକୁ ଖାଇଥାଏ ।

ବିଷ ଥଳୀରେ ଥିବା ବିଷର ପରିମାଣ ବିଭିନ୍ନ ଜାତିର କଙ୍କଡ଼ାବିଛା ଉପରେ ନିର୍ଭର କରିଥାଏ । ଏହାର ଶରୀର ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ, ମୁଣ୍ଡ ଓ ଗଣ୍ଡି । ଗଣ୍ଡି ମଧ୍ୟରେ ଲାଞ୍ଜ ଅନ୍ୟତମ ଅଂଶ । ମୁଣ୍ଡର ଆଗ ଭାଗରେ ଏକ ଛୋଟ ପାଟି ଥାଏ ।

କଙ୍କଡ଼ାବିଛା ସାଧାରଣତଃ ଭଲ ଶିକାରୀ ନୁହେଁ । ଖୁବ୍ ଧୀରେ ଧୀରେ ଏମାନେ ଗତି କରିଥାଆନ୍ତି ଏବଂ ବସ୍ତୁତଃ ଅନ୍ଧ ଅଟନ୍ତି । ଏମାନଙ୍କର ଘ୍ରାଣ ଶକ୍ତି ବହୁତ କମ ହୋଇଥିବାରୁ ଏମାନେ ଗୋଟିଏ ସ୍ଥାନରେ ଛକି ରହିଥାନ୍ତି । ଖାଦ୍ୟ ପଦାର୍ଥ ସେମାନଙ୍କ ଆଗକୁ ଆସିଲେ ସେମାନେ ତାକୁ ଧରିଥାନ୍ତି । ଯେତେବେଳେ ଖାଦ୍ୟ ଯଥା କୀଟ ପତଙ୍ଗ ଏମାନଙ୍କର

ଆଟକୁ ଆସନ୍ତି, ସେତେବେଳେ କଙ୍କଡ଼ାବିଛା ଦେହରେ ଥିବା ଘ୍ରାଣ ଲୋମ ଏବଂ ଘ୍ରାଣ କୋଷଦ୍ୱାରା ଏହା ଖାଦ୍ୟ ବୋଲି ଜାଣିପାରି ଏମାନଙ୍କୁ ଧରିଥା'ନ୍ତି । ଏହି ଘ୍ରାଣ ଲୋମ ଓ ଘ୍ରାଣ କୋଷ ଏହା ଶରୀରର ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳରେ ଥାଏ ।

ବ୍ରାଜିଲରେ ରହୁଥିବା ନିର୍ଦ୍ଦିଷ୍ଟ ଏକଜାତୀୟ କଙ୍କଡ଼ାବିଛା ବ୍ୟତୀତ ପୃଥିବୀ ପୃଷ୍ଠର ପ୍ରାପ୍ତ ସବୁ କଙ୍କଡ଼ାବିଛା 'ସେକ୍ସୁଆଲ' ପଦ୍ଧତିରେ ବଂଶ ବିସ୍ତାର କରିଥାନ୍ତି ।

ବ୍ରାଜିଲରେ ଦେଖାଯାଉଥିବା ଟିଟାୟୁାସ ନାମକ ଏକ ଶ୍ରେଣୀର କଙ୍କଡ଼ାବିଛାଙ୍କ ମଧ୍ୟରେ ପୁରୁଷ କଙ୍କଡ଼ାବିଛା ନଥାନ୍ତି । ସ୍ତ୍ରୀ କଙ୍କଡ଼ାବିଛା ଏକ ସ୍ୱତନ୍ତ୍ର ପଦ୍ଧତିରେ ଶିଶୁ କଙ୍କଡ଼ାବିଛା ଜନ୍ମ କରିଥାଏ । ଏହି ପ୍ରଣାଳୀକୁ ପାର୍ଥୋନୋଜେନେସିସ କୁହାଯାଏ । ଅନ୍ୟ ଶ୍ରେଣୀର କଙ୍କଡ଼ାବିଛାମାନେ ସାଧାରଣତଃ ସ୍ତ୍ରୀ ପୁରୁଷ ମିଳିତ ହେବା ପୂର୍ବରୁ ଏକ ପ୍ରକାର ନାଚ କରିଥାନ୍ତି । ଯାହାକୁ କୋର୍ଟସିପ୍ ନାଚ କୁହାଯାଏ ।

ଶିଶୁ କଙ୍କଡ଼ାବିଛାକୁ ସ୍ତ୍ରୀ କଙ୍କଡ଼ାବିଛା ନିଜ ପିଠିରେ ବହୁଦିନ ଧରି ରଖି ଏମାନଙ୍କୁ ବଢାଇଥାଏ । ଅଣ୍ଡାରୁ ଛୁଆ ଫୁଟିବା ପରେ ବହୁ ଦିନ ଧରି ଏମାନେ ମାଆ ପିଠିରେ ରହିଥାନ୍ତି ଏବଂ କ୍ରମେ ସେମାନେ ବଡ଼ ହେବା ପରେ ତଳକୁ ଚାଲି ଆସିଥାନ୍ତି । ଛୋଟ କଙ୍କଡ଼ାବିଛା ଛୁଆ ଧଳା ଓ କଅଁଳିଆ ହୋଇଥାଏ । ମା' କଙ୍କଡ଼ାବିଛା ନିଜର ବିଷାକ୍ତ ଲାଞ୍ଜ ଦ୍ୱାରା ଶିଶୁମାନଙ୍କୁ ଜଗି ରହିଥାଏ । ବଡ଼ ହେବା ପରେ ଏମାନଙ୍କର ରଙ୍ଗ ପରିବର୍ତ୍ତନ ହୋଇଥାଏ । କଳା, ହଳଦିଆ, ବାଇଗଣି ଓ ଅନ୍ୟାନ୍ୟ ବିଭିନ୍ନ ରଙ୍ଗର କଙ୍କଡ଼ାବିଛା ସାଧାରଣତଃ ଦେଖାଯାଇଥାନ୍ତି । ଅତି ଛୋଟ ଏକ ଇଞ୍ଚ ଲମ୍ବରୁ କମ୍ ଲମ୍ବ ବିଶିଷ୍ଟ କଙ୍କଡ଼ାବିଛା ଠାରୁ, ପ୍ରାୟ ଆଠ ଇଞ୍ଚ ଲମ୍ବ ବିଶିଷ୍ଟ କଙ୍କଡ଼ା ବିଛା ଦେଖା ଯାଆନ୍ତି ।

ପୃଥିବୀ ପୃଷ୍ଠରେ ୫୦୦ରୁ ଅଧିକ ପ୍ରକାରର କଙ୍କଡ଼ାବିଛା ଦେଖାଯାଇଥାନ୍ତି । ଲାଞ୍ଜରେ ଥିବା ବିଷ ଥଳୀରେ ଦୁଇଟି ଛୋଟ ଛୋଟ ମୁଣା

ଥାଏ । ପୃଥିବୀ ପୃଷ୍ଠରେ ଦେଖାଯାଉଥିବା କଙ୍କଡ଼ାବିଛାମାନଙ୍କ ମଧ୍ୟରୁ ପାଞ୍ଚ ପ୍ରକାରର କଙ୍କଡ଼ାବିଛା ମଣିଷର ମୃତ୍ୟୁ ପାଇଁ ଦାୟୀ ହୋଇଥାନ୍ତି । ଏମାନେ ଖୁବ୍ ବିଷାକ୍ତ । କଙ୍କଡ଼ାବିଛାର ବିଷର ରଙ୍ଗ ସାଧାରଣତଃ ଧଳା ବା କସରା ହୋଇଥାଏ । ଏହି ବିଷର ମୁଖ୍ୟ ଅଂଶ ପ୍ରୋଟିନ ଏବଂ ଏଥିରେ ଏଞ୍ଜାଇମକୁ ନଷ୍ଟ କରୁଥିବା ଏକ ବିଷାକ୍ତ ପଦାର୍ଥ ଥାଏ ।

କଙ୍କଡ଼ାବିଛାର ବିଷ ଏତେ ବିଷାକ୍ତ ହେଲେ ମଧ୍ୟ ଏହା ବହୁ ଉପକାରୀ । ଏଥିରୁ ଟକ୍‌ସିନ୍ ନାମକ ଦରକାରୀ ପଦାର୍ଥ ମିଳିଥାଏ । ଆଫ୍ରିକା, ଦକ୍ଷିଣ ଆମେରିକା, ୱେଷ୍ଟ୍ ଇଣ୍ଡିଜ ପ୍ରଭୃତି ଦେଶରେ ବିଭିଷିକା ସୃଷ୍ଟି କରିଥିବା ସେନ୍ଲ ଫିଭରର ପ୍ରତିଷେଧକ କଙ୍କଡ଼ାବିଛା ବିଷରୁ ତିଆରି ହୋଇଥାଏ । ଏହା ମଧ୍ୟ ବହୁ ଦରକାରୀ ଔଷଧପତ୍ର ତିଆରିରେ ବ୍ୟବହୃତ ହୋଇଥାଏ । କଙ୍କଡ଼ାବିଛା କାମୁଡ଼ିଲେ କାମୁଡ଼ା ସ୍ଥାନକୁ କାଟି କିଛି ରକ୍ତ ବାହାର କରିଦେଇ କ୍ଷତ ସ୍ଥାନର କିଛି ଉପରକୁ ଏକ ଦଉଡ଼ି ବାନ୍ଧି ଦେଇ କ୍ଷତ ସ୍ଥାନକୁ ବରଫ ପାଣିରେ ବୁଡ଼ାଇ ରଖିଲେ ଉପକାର ମିଳିଥାଏ ।



# ନିର୍ଜୀବ ଭୂତାଣୁର ଅଦ୍ଭୁତ ଜୀବନ କାହାଣୀ

ଆମ ପୃଥିବୀ ପୃଷ୍ଠରେ ଦେଖାଯାଉଥିବା ଏକକୋଷୀ ପ୍ରାଣୀଠାରୁ ବହୁ କୋଷୀ ବିରାଟକାୟ ପ୍ରାଣୀ, ଉଦ୍ଭିଦ ସମସ୍ତଙ୍କର ନିର୍ଦ୍ଦିଷ୍ଟ ଶରୀର ବା ଦେହ ଅଛି । ଦେହରେ ବିଭିନ୍ନ କାର୍ଯ୍ୟ କରିବା ପାଇଁ ବିଭିନ୍ନ ଅଙ୍ଗ-ପ୍ରତ୍ୟଙ୍ଗ ଅଛି । ଆମ ମଣିଷ ଦେହରେ ଚାଲିବା ପାଇଁ ଗୋଡ଼, ଖାଇବା ଓ କାମ କରିବାକୁ ହାତ, ଦେଖିବା ପାଇଁ ଆଖି, ଶୁଣିବା ପାଇଁ କାନ ଇତ୍ୟାଦି ଅଛି । ସେହିପରି ଉଦ୍ଭିଦର ଶରୀରରେ ଖାଦ୍ୟ ପ୍ରସ୍ତୁତ କରିବା ପାଇଁ ପତ୍ର, ଖାଦ୍ୟ ସଂଗ୍ରହ ପାଇଁ ଚେର ପରି ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗ ମାନ ରହିଛି । ମାତ୍ର ଆମ ପୃଥିବୀ ପୃଷ୍ଠରେ ଏପରି ଏକ ଜୀବନ୍ତ ବସ୍ତୁ ଅଛି ଯାହାର କି ଆଦୌ ଶରୀର ନାହିଁ । ଏହା ଅତି କ୍ଷୁଦ୍ରକାୟ । ଦେହ ନଥିବା ଏହି ଜୀବନ୍ତ ବସ୍ତୁ କଏ ତମେ ଜାଣ ?

ଏହା ଭୂତାଣୁ ବା ଭାଇରସ । ଯାହାକି ସବୁଆଡ଼େ ଦେଖାଯାଏ ଏବଂ ଖରା, ବର୍ଷା, ଗରମ, ସବୁ ସହିପାରେ । ପୃଥିବୀ ପୃଷ୍ଠରେ ଆଜଯାଏ ଦେଖାଯାଉଥିବା ପ୍ରତ୍ୟେକ ପ୍ରାଣୀ ଉଦ୍ଭିଦଠାରୁ ଏହା ଆକାରରେ କ୍ଷୁଦ୍ର ଏବଂ ଅତି ସାଧାସିଧା ଓ ପୁରାତନ ଜୀବନ୍ତ ପଦାର୍ଥ ବୋଲି ପରି-ଚିତ । ଏହା ଏତେ କ୍ଷୁଦ୍ର ହେଲେ ମଧ୍ୟ କେବଳ ଜୀବନ୍ତ କୋଷ ବା ପଦାର୍ଥକୁ ଆକ୍ରମଣ କରି ବିଭିନ୍ନ ପ୍ରକାର ମାରାତ୍ମକ ରୋଗ ସୃଷ୍ଟି କରି-ଥାଏ । ଭାଇରସ ଦ୍ୱାରା ବସନ୍ତ, ମିଳିମିଳା, ଆଫ୍ରିକାରେ ପ୍ରଳୟ ସୃଷ୍ଟି କରିଥିବା ହଳଦିଆ ଜ୍ୱର, ପୋଲିଓ, ହାଡ଼ଫୁଟି, ସାଧାରଣ ଥଣ୍ଡା, ଇନଫ୍ଲୁଏଞ୍ଜା, ପୃଥିବୀରେ ଏବେ ପ୍ରଳୟ ସୃଷ୍ଟି କରିଥିବା ଏଡ଼୍ସ ରୋଗ ଏପରିକି କର୍କଟ ରୋଗ ମଣିଷ ଦେହରେ ସୃଷ୍ଟି ହୋଇଥାଏ ।

ମଣିଷ ବ୍ୟତୀତ ଉଦ୍ଭିଦ ଜଗତରେ ଟମାଟୋ, ଆଳୁ, ଧୂଆଁପତ୍ର, କିଆଁରୁ, ବାଦାମ ଗଛର ଟେମ୍ପୋଡ଼ା ରୋଗ, କୋବି, ମୂଳା, ବିନ୍ ଗଛରେ ହଳଦିଆ ରୋଗ, ଚନ୍ଦନ ଗଛର ଏକ ପ୍ରକାର ରୋଗ ଏବଂ ବହୁ ରୋଗ ସୃଷ୍ଟି କରିଥାଏ । କେତେକ ଭାଇରସ ବ୍ୟାକ୍ଟେରିଆକୁ ଆକ୍ରମଣ କରି ଏହାର କୋଷକୁ ନଷ୍ଟ କରି ଦେଇଥାନ୍ତି ।

ଆମେରିକାର ନ୍ୟାସନାଲ କର୍କଟ ରୋଗ ଗବେଷଣା କେନ୍ଦ୍ରର ଡକ୍ଟର ରବର୍ଟ ଗ୍ୟାଲୋଙ୍କ ମତ ଅନୁସାରେ ମଣିଷ ଦେହରେ ସୃଷ୍ଟି ହେଉଥିବା କେତେକ କର୍କଟ ରୋଗ ପାଇଁ ଭାଇରସ ହିଁ ମୁଖ୍ୟତଃ ଦାୟୀ । ତେଣୁ ଏହି କ୍ଷୁଦ୍ର ଜୀବ ଯେ କେତେ ମାରାତ୍ମକ ଏହିଥିରୁ ସହଜରେ ଜଣାପଡ଼େ । ତେଣୁ ଆଜିଯାଏ ଭାଇରସ ସୃଷ୍ଟିର ପରିବର୍ତ୍ତନରେ ବହୁ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରି ଆସିଛି । ଅତୀତରେ ଭାଇରସ ବିଷୟରେ ପୃଥିବୀବାସୀ ଜାଣିବା ପୂର୍ବରୁ ଏହାଦ୍ୱାରା ଆକ୍ରାନ୍ତ ହୋଇ ବହୁ ଲୋକ ବସନ୍ତ, ଜ୍ୱର, କର୍କଟ ରୋଗ ପ୍ରଭୃତିରେ ଦୟନୀୟ ଭାବରେ ମୃତ୍ୟୁ ବରଣ କରିଛନ୍ତି । ବର୍ତ୍ତମାନ ପୃଥିବୀ ପୃଷ୍ଠରେ ବିଭୀଷିକା ସୃଷ୍ଟି


ଇନ୍‌ଫ୍ଲୁଏଞ୍ଜା ଭାଇରସ୍


ଏଡ଼ସ୍ ରୋଗର ଭାଇରସ୍


ସାଧାରଣ ଭାଇରସ୍

କରିଥିବା ଏଡ଼ସ୍ ରୋଗ ହିଁ ଏଡ଼ସ୍ ଭାଇରସ ଦ୍ୱାରା ସଂକ୍ରମିତ ହୋଇଥିବାର ଜଣାପଡ଼ିଲାଣି । ବର୍ତ୍ତମାନ ୭୫ ହଜାର ଲୋକ ଏଡ଼ସରେ ଆକ୍ରାନ୍ତ ହୋଇ ୨୫ ହଜାରରୁ ଅଧିକ ଲୋକ ମୃତ୍ୟୁ ବରଣ କଲେଣି ଓ ଅନ୍ୟମାନେ କାଳାନ୍ତକ କଷ୍ଟ ଭୋଗ କରି ମୃତ୍ୟୁ ସହିତ ସଂଗ୍ରାମ କରି ଚାଲିଛନ୍ତି । ଆମକୁ ଖାଲି ଆଖିରେ ଦେଖା ଯାଉ ନଥିବା ଏହି ମାରାତ୍ମକ ଜୀବ ବିଷୟରେ ଅଧିକ ଜାଣିବା ଦରକାର ।

ଭାଇରସର କୋଷ ନାହିଁ, ଶରୀର ନାହିଁ । କେବଳ ଜନନ ପଦାର୍ଥ ବା ନ୍ୟୁକ୍ଲିକ ଏସିଡ୍ ଓ ପ୍ରୋଟିନର ଏକ ସରଳ ପଦାର୍ଥ । ଏହା ଜୀବନ୍ତ କୋଷ ମଧ୍ୟରେ ନଥିବା ବେଳେ ଜଡ଼ ପରି ମୁକ୍ତ ଭାବରେ ବହୁ ଦିନ ଧରି ଅକ୍ଷମ ରୂପେ ରହିଥାଏ । ଏହି ସମୟରେ ଏହା କୌଣସି ମାରାତ୍ମକ କାର୍ଯ୍ୟକଳାପ କରେ ନାହିଁ । ମାତ୍ର ଜୀବନ୍ତ କୋଷ ମଧ୍ୟକୁ ପ୍ରବେଶ କରିବା ମାତ୍ରେ ଏହା ଜୀବନ୍ତ ଓ ସକ୍ରିୟ ହୋଇ ଉଠେ ଓ ତାହାର ବିଷକ୍ରିୟା ଆରମ୍ଭ କରିଦିଏ । ଏହା ଜୀବନ୍ତ କୋଷ ମଧ୍ୟକୁ ପ୍ରବେଶ କରିବା ପରେ ନିଜେ ବଂଶବୃଦ୍ଧି କରେ । ଅନ୍ୟ ଜୀବନ୍ତ ପଦାର୍ଥ ପରି ଏହା ଶ୍ୱାସକ୍ରିୟା କରେ ନାହିଁ । ନିଜେ ଚଳନକ୍ଷମ ହେବା ପାଇଁ ଭାଇରସ ଆଶ୍ରୟ ନେଇଥିବା କୋଷର ଏଞ୍ଜାଇମ ବା ରସ ଉପରେ ସମ୍ପୂର୍ଣ୍ଣ ରୂପେ ନିର୍ଭର କରିଥାଏ ।



( ବେଙ୍ଗଫୁଲ ଆକୃତିର ଭାଇରସ୍ )



( ଉଦ୍ଭିଦକୁ ଆକ୍ରମଣ କରୁଥିବା ଭାଇରସ୍ )

ବହୁ ମାରାତ୍ମକ ରୋଗ ସୃଷ୍ଟିକାରୀ ପ୍ରଳୟର ଅନ୍ୟନାମ ଏହି ଭୂତାଣୁକୁ ୧୮୯୦ ଖ୍ରୀଷ୍ଟାବ୍ଦରେ ରୁଷ ଉଦ୍ଭିଦ ବିଜ୍ଞାନୀ ଇଆନଓ୍ୱାସ୍କି ପ୍ରଥମେ ଆବିଷ୍କାର କରିଥିଲେ । ଏହା ଏତେ କ୍ଷୁଦ୍ର ଯେ ଅଣୁବୀକ୍ଷଣ

ଯନ୍ତ୍ରରେ ଏହାକୁ ଦେଖିବା ସମ୍ଭବ ନୁହେଁ । ଇଲେକଟ୍ରନ ଅଣୁବୀକ୍ଷଣ ଯନ୍ତ୍ର ଉଦ୍ଭାବନ ହେବା ପରେ ଏହାକୁ ଦେଖିବା ଓ ଏହାର ଫଟୋଚିତ୍ର ନେବା ସମ୍ଭବପର ହୋଇଥିଲା । ଏହାର ଆକାର ଲମ୍ବା, ରଡ଼ ପରି, ଗୋଲାକାର, ବେଙ୍ଗଫୁଲ ଆକୃତିର ହୋଇଥାଏ । ରାସାୟନିକ ପଦାର୍ଥ ପରି କେତେକ ଭାଇରସ ଦାନାପରି ରହି ପାରନ୍ତି । ଏହାର ଆକାର ଏତେ ଛୋଟ ଯେ ଆମର ଆଖିକୁ ଦିଶୁନଥିବା ଏକକୋଷୀ ବ୍ୟାକ୍ଟେରିଆ ଠାରୁ ଏହା ୧୦ରୁ ୧୦୦ ଗୁଣ ବା ତାଠାରୁ ଅଧିକ ଗୁଣ ଛୋଟ । ଗୋଟିଏ ଷ୍ଟେଟ ଆଲପିନ କଣ୍ଟାର ମୂନ ଯେତିକ ସ୍ଥାନରେ ରହିବ, ଭାଇରସର ଆକାର ଏହାର ୧୬ ହଜାର ଭାଗରୁ ଏକ ଭାଗ । ଏଇଥିରୁ ଏହା କେତେ କ୍ଷୁଦ୍ର ତାହା ସହଜରେ ଅନୁମେୟ ।

ଏହି କ୍ଷୁଦ୍ର ଜୀବର ସୃଷ୍ଟି ନେଇ ବହୁ ବୈଜ୍ଞାନିକ ବିଭିନ୍ନ ମତାମତ ଦେଇଛନ୍ତି । ଏହାର ଏପରି ପରିବର୍ତ୍ତିତ ଗୁଣ ଯୋଗୁ ଏହା ପ୍ରାଣୀ ବା ଉଦ୍ଭିଦ କୌଣସି ଗୋଷ୍ଠୀଭୁକ୍ତ ହୋଇନାହିଁ । କେତେକ ଏହାକୁ ଏକ ଜଡ଼ ପଦାର୍ଥ ବୋଲି ମତ ଦେଇଥାନ୍ତି । ମାତ୍ର ଯେ ହେତୁ ଏହା ଆଶ୍ରୟ ଦାତା, ଜୀବନ୍ତ କୋଷ ମଧ୍ୟରେ ପ୍ରବେଶ କରିବା ପରେ ନିଜେ ବଂଶ ବୃଦ୍ଧି କରିଥାଏ ଏବଂ ବଢ଼ିଥାଏ ତେଣୁ ଏହାକୁ ଏକ ଜୀବନ୍ତ ବସ୍ତୁ ବୋଲି ଅନେକ ମତ ଦିଅନ୍ତି । ମାତ୍ର ଶ୍ୱାସକ୍ରିୟା ଇତ୍ୟାଦି ଜୀବନ୍ତ ପଦାର୍ଥର ଗୁଣ ନଥିବାରୁ ଏହାକୁ ମୃତ କୁହାଯାଏ । କାରଣ ଏହା ଜୀବନ୍ତ କୋଷ ସମ୍ପର୍କରେ ଆସିବା ପୂର୍ବରୁ ମୃତ ପ୍ରାୟ ରହିଥାଏ । କେତେକ ଏକ କୋଷୀ ବ୍ୟାକ୍ଟେରିଆରୁ ହିଁ ଭାଇରସର ଉତ୍ପତ୍ତି ହୋଇଛି ବୋଲି କେତେକ ବୈଜ୍ଞାନିକ ମତ ଦିଅନ୍ତି ।

ଭାଇରସ ସାଧାରଣ ଜନନ ପଦାର୍ଥ ବା ନ୍ୟୁକ୍ଲିକ ଏସିଡ଼ ଓ ପ୍ରୋଟିନର ଏକ ମିଶ୍ରିତ ପଦାର୍ଥ । ନ୍ୟୁକ୍ଲିକ ଏସିଡ଼ ଏହାର ଅଭ୍ୟନ୍ତରସ୍ଥ ମୁଖ୍ୟ ଅଂଶ ଏବଂ ଏହା ଉପରେ ପ୍ରୋଟିନର ଏକ ବା ଦୁଇ ପରସ୍ତ ଘୋଡ଼ଣୀ ରହିଥାଏ । ନ୍ୟୁକ୍ଲିକ ଏସିଡ଼ ହିଁ ମୁଖ୍ୟତଃ ସଂକ୍ରମଣ ପାଇଁ ଦାୟୀ । ପ୍ରୋଟିନ କେବଳ ଏହାକୁ ରକ୍ଷା କରିଥାଏ । ଗୋଟିଏ ଭାଇରସ

କୋଷରେ ଶତକଡ଼ା ୧ ରୁ ୪୦ ଭାଗ ନ୍ୟୁକ୍ଳିକ ଏସିଡ ଓ ଅବଶିଷ୍ଟ ଅଂଶ ପ୍ରୋଟିନ ଥାଏ । ନ୍ୟୁକ୍ଳିକ ଏସିଡ଼ ସାଧାରଣତଃ ଆର. ଏନ. ଏ. ବା ଡି. ଏନ. ଏ ଶ୍ରେଣୀର ହୋଇଥାଏ । ପ୍ରାଣୀ ଓ ଉଦ୍ଭିଦର କୋଷରେ ଥିବା ଅନ୍ୟାନ୍ୟ କୌଣସି ପଦାର୍ଥ ଭାଇରସରେ ନଥାଏ । ଭାଇରସ କୌଣସି ସଜୀବ କୋଷ ସମ୍ପର୍କରେ ଆସିଲେ ତା' ଦେହରେ ଏକ ସ୍ୱତନ୍ତ୍ର ଅଞ୍ଚଳରେ ଲାଗିରହେ । ଏହା ପରେ କୋଷ ମଧ୍ୟକୁ କ୍ରମେ କ୍ରମେ ପଶି-ଯାଏ । ଉକ୍ତ କୋଷ ମଧ୍ୟରେ ଭାଇରସ ତା'ର ପ୍ରୋଟିନ ଆବରଣକୁ ତ୍ୟାଗ କରେ ଏବଂ ନ୍ୟୁକ୍ଳିକ ଏସିଡ଼ ମୁକ୍ତ ହୋଇ ବହୁ ଖଣ୍ଡରେ ବିଭକ୍ତ ହୁଏ । ଏହି ଖଣ୍ଡ ବହୁ ଥର ବହୁଗୁଣିତ ହୋଇ ପ୍ରୋଟିନ ଓ ନ୍ୟୁକ୍ଳିକ ଏସିଡ଼ ଖଣ୍ଡ ସୃଷ୍ଟି କରିଥାନ୍ତି ଏବଂ ପରିଶେଷରେ ନ୍ୟୁକ୍ଳିକ ଏସିଡ଼ ସହିତ ପ୍ରୋଟିନ ମିଶିଯାଇ ବହୁ ନୂତନ ଭାଇରସ ସୃଷ୍ଟି ହୋଇଥାଆନ୍ତି । ଏହାପରେ ଜୀବନ୍ତ କୋଷକୁ ଫଟାଇ ନୂତନ ଭାଇରସ ପଦାକୁ ବାହାରି ଆସି ଅନ୍ୟ ସଦ୍ୟ କୋଷକୁ ଆକ୍ରମଣ କରିଥାନ୍ତି । କୋଷ ନଷ୍ଟ ପ୍ରକ୍ରିୟା ଏହିପରି ଲାଗି ରହିଥାଏ ।

ଅଜ୍ଞାତରୁ ମଣିଷ ସମାଜ ଭାଇରସର ଅତ୍ୟାଚାରର ଶିକାର ହୋଇ ଆସିଛି । ୩୦୦୦ ବର୍ଷ ପୂର୍ବରୁ ଇଜିପ୍ଟ ତଥା ଅନ୍ୟ ଦେଶରେ ବସନ୍ତ ରୋଗର ପ୍ରାଦୁର୍ଭାବ ଦେଖାଦେଇଛି । ୧୬ ଶହରୁ ୧୭ ଶହ ଶତାବ୍ଦୀ ମଧ୍ୟରେ ୟୁରୋପର ବହୁ ଅଞ୍ଚଳ ହଲାଣ୍ଡ ପ୍ରଭୃତି ଦେଶରେ ଭାଇରସ ଦ୍ୱାରା ସୃଷ୍ଟି ହୋଇଥିବା ରୋଗରେ ବହୁ ଲୋକ ମୃତ୍ୟୁ ବରଣ କରିଥିଲେ । ଅଷ୍ଟାଦଶ ଶତାବ୍ଦୀରେ ଲଣ୍ଡନର ଗ୍ରାମାଞ୍ଚଳରେ କାମ କରୁଥିବା ଡାକ୍ତର ଏଡ଼ୱାର୍ଡ଼ ଜେନର ଗୋବୀଜ ଟୀକା ଆବିଷ୍କାର କରି ପ୍ରଥମ ଭାଇରସ ପ୍ରତିରୋଧ ଔଷଧ ଆବିଷ୍କାର କରିଥିଲେ । ମାତ୍ର ପ୍ରାୟ ୧୯୦୦ ଖ୍ରୀଷ୍ଟାବ୍ଦ ବେଳକୁ ଭାଇରସ ବିଷୟରେ ଲୋକେ ଜାଣିବାକୁ ପାଇଲେ । ଶ୍ରେଷ୍ଠ ସାପର ବିଷ ଠାରୁ ଅଧିକ ... ପୃଥିବୀ ପୃଷ୍ଠରେ ଦେଖାଯାଉ-ଥିବା ଏହି ଅତି କ୍ଷୁଦ୍ରତମ ଜୀବନ୍ତ ପଦାର୍ଥ ଯେ କେତେ ମାରାତ୍ମକ ତାହା ଉପରୋକ୍ତ ଆଲୋଚନାରୁ କଳ୍ପିତଭାବେ ଜଣାଯାଏ । ବିଭିନ୍ନ ପ୍ରକାର ରୋଗ ଭିନ୍ନ ଭିନ୍ନ ଭାଇରସ ଦ୍ୱାରା ସୃଷ୍ଟି ହୋଇଥାଏ ।

ବୈଜ୍ଞାନିକ ଡେଭିଡ୍ ବାଲ୍ଟିମୋର ଭାଇରସ ଉପରେ ଗବେଷଣା କରି ନୋବେଲ ପ୍ରାଇଜ ପାଇଛନ୍ତି । ଭାଇରସ କିପରି ତାର ଉପସ୍ଥିତି ନଜଣାଇ କପଟ ଲୁଚକାଳି ଖେଳିଥାଏ ଏହା ଉପରେ ସେ ବହୁ ଗବେ-ଷଣା କରି ଭାଇରସର ଉପସ୍ଥିତି ବିଷୟରେ ଜାଣିବାକୁ ବିଭିନ୍ନ ପ୍ରଣାଳୀ ଆବିଷ୍କାର କରିଛନ୍ତି । କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟର ଡକ୍ଟର ଆର. ପାଲମର ବେସଲେ ୧୯୭୫ ରୁ ୧୯୭୮ ଯାଏ ତାଇଓ୍ୱାନ ଅଞ୍ଚଳରେ ଗବେଷଣା କରି କଲିଜାରେ କର୍କଟ ରୋଗ ସୃଷ୍ଟି କରୁଥିବା ଏକ ଶ୍ରେଣୀର ଭାଇରସକୁ ଆବିଷ୍କାର କରିଥିଲେ । ଅଫ୍ରିକା ଓ ଗୁଏନା ପ୍ରଭୃତି ଦେଶରେ ଶିଶୁମାନଙ୍କୁ ହେଉଥିବା ଲିମ୍ଫୋମା ବାର ଭାଇରସ ଦ୍ୱାରା ଆକ୍ରମିତ ହେଉଥିବାର ଜଣାଯାଇଛି । ଦକ୍ଷିଣ ଚୀନରେ ଗଳା, ନାସା ପ୍ରଭୃତିରେ ରୋଗ ସୃଷ୍ଟି କରି ପ୍ରାୟ ୫୦ ହଜାର ବ୍ୟକ୍ତିଙ୍କୁ ଆକ୍ରାନ୍ତ କରିଥିବା ଏକ ମାରାତ୍ମକ ରୋଗ ରେଷ୍ଟ୍ରୋ ଭାଇରସ ଦ୍ୱାରା ସଂକ୍ରମିତ ହୋଇଥିବାର ଜଣାଯାଇଛି । ଏହି ଭାଇରସ ମୂଷାଠାରୁ ଆରମ୍ଭ କରି କୁକୁଡ଼ା ପର୍ଯ୍ୟନ୍ତ ବହୁ ପ୍ରକାର ଜୀବଜନ୍ତୁଙ୍କ ଦେହରେ ବିଭିନ୍ନ ପ୍ରକାର ରୋଗ ସୃଷ୍ଟି କରିଥାନ୍ତି । ଦକ୍ଷିଣ ଆଫ୍ରିକା, ଜାପାନ ଓ କେତେକ ଦ୍ୱୀପପୁଞ୍ଜ, ଭାରତ ଓ ଅନ୍ୟାନ୍ୟ ଦେଶରେ ଦେଖାଯାଉଥିବା ରକ୍ତ କର୍କଟ ରୋଗ ମଧ୍ୟ ଟି. ସେଲ ଭାଇରସ ଦ୍ୱାରା ହିଁ ସଂକ୍ରମିତ ହୋଇଥାଏ । ଶତକଡ଼ା ୮୦ ଭାଗ କର୍କଟ ରୋଗ ହିଁ କେବଳ ପାପିଲମ ଭାଇରସ ଦ୍ୱାରା ସଙ୍ଘଟିତ ହେଉଛି ବୋଲି ଜର୍ମାନସ୍ଥିତ କର୍କଟରୋଗ ଗବେଷଣା କେନ୍ଦ୍ରର ଡକ୍ଟର ହାରାଲଡ୍ ଜୁର ହୁସେନ ପ୍ରକାଶ କରିଛନ୍ତି । ଶରୀରର ପ୍ରତିରୋଧ ଶକ୍ତିର ଦୁର୍ବଳତା ଦେଖି ଏହାର ସୁଯୋଗ ନେଇ ଭାଇରସ ଆମ ଦେହକୁ ପ୍ରବେଶ କରିଥାଏ ଏବଂ ବିଭିନ୍ନ ଜୀବନ୍ତ କୋଷ ଗୁଡ଼ିକୁ ଆକ୍ରମଣ କରି ଶେଷରେ ଜନ୍ତୁଟିର ଜୀବନ ନାଶ କରିଥାଏ ।

ଭାଇରସ ଆମର ଏତେ କ୍ଷତି କରୁଥିଲେ ମଧ୍ୟ କେତେକ ଶ୍ରେଣୀର ଭାଇରସ ମଣିଷ ତଥା ପ୍ରାଣୀ ଜଗତର ଉପକାରୀ । ପୃଥିବୀ ପୃଷ୍ଠର କ୍ରମ ପରିବର୍ତ୍ତନ ବା ଇଭୋଲ୍ୟୁସନ ସମୟରେ ଗୋଟିଏ ପ୍ରାଣୀ ବା ଉଦ୍ଭିଦରୁ ଅନ୍ୟ ପ୍ରାଣୀ ଉଦ୍ଭିଦର କୋଷକୁ ଜିନ ପରିବର୍ତ୍ତନ କରାଇ

ପ୍ରାଣୀ ଓ ଉଦ୍ଭିଦର କେତେକ ଉନ୍ନତ ଓ କ୍ଷମ ପରିବର୍ତ୍ତନ ଭାଇରସ ଦ୍ୱାରା ହିଁ ସଂଗଠିତ ହୋଇଥାଏ । "ଜିନ ଥେରାପି" ପଦ୍ଧତି ପାଇଁ କେତେକ ଭାଇରସଙ୍କୁ ମଧ୍ୟ ବ୍ୟବହାର କରାଯାଇଥାଏ । ଭାଇରସ ପରି ଏକ ମାରାତ୍ମକ ଜୀବ ବିଷୟରେ ତ ତୁମେମାନେ ଊଣା ଅଧିକେ କିଛି ଜାଣିଲ । ଭାଇରସ ନଥିବା ପୃଥିବୀ କେବେ ସମ୍ଭବ ନୁହେଁ ।



# ମା' ଛେଉଣ୍ଡ଼ ଜୀବ

ଆମର ଏକ ପ୍ରଥା ପ୍ରଚଳିତ ଅଛି ଯେ, "ଜନନୀ ଜନ୍ମଭୂମି ଶ୍ଚ ସ୍ୱର୍ଗାଦପୀ ଗରୀୟସୀ।" ମା' ଜନ୍ମଭୂମି, ସ୍ୱର୍ଗଠାରୁ ମଧ୍ୟ ବଡ଼। ଆମ ପୃଥିବୀ ପୃଷ୍ଠରେ ମାନବ ସମାଜରେ ତଥା ଜୀବଜଗତରେ ମା'ର ସ୍ନେହର ତୁଳନା ନାହିଁ। ମା' ହିଁ ଶିଶୁକୁ ଜନ୍ମଦେଇ ଲାଳନ ପାଳନ କରି ମଣିଷ କରିଥାଏ ଏବଂ ବହୁ ଦୁଃଖ କଷ୍ଟ ସହି ଶିଶୁର ପାଖେ ପାଖେ ରହି ତାକୁ ଶ୍ରେଷ୍ଠ ପିଲାରୁ ବଡ଼ କରିଥାଏ । ଆମର ବହୁ ବଡ଼ ମଣିଷଙ୍କ ଜୀବନୀ ତୁମେମାନେ ପଢ଼ିଲେ ସେମାନେ କପରି ସେମାନଙ୍କର ମା' ମାନଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ ବଡ଼ବଡ଼ କାର୍ଯ୍ୟ କରୁଥିଲେ ତାହା ତୁମେ ଜାଣି-ପାରିବ। ମହାତ୍ମା ଗାନ୍ଧି ଇଂଲଣ୍ଡ ପଢ଼ିବା ପାଇଁ ଗଲାବେଳେ ତାଙ୍କ ମା' କାବା ଗାନ୍ଧିଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ବିଦେଶରେ ମଦ, ମାଂସ ଖାଇବେ ନାହିଁ ବୋଲି ମା'ଙ୍କ ନିକଟରେ ପ୍ରତିଜ୍ଞା କରି ଯାଇଥିଲେ। ମା'ର ସ୍ନେହ କେତେ ତାହା ତ ତୁମେମାନେ ସମସ୍ତେ ଜାଣୁଥିବ। ଯେଉଁମାନଙ୍କର ମା' ନାହିଁ ସେମାନଙ୍କର ଜୀବନ କେତେ ଦୁଃଖ କଷ୍ଟ ମଧ୍ୟରେ ଗଡ଼ାଯାଇଥିବ ତୁମେ ଭାବିଲ ଦେଖି । ସେଥିପାଇଁ ଆମ ସମାଜରେ ଯାହାର ମା' ନଥାଏ ତାକୁ ସମସ୍ତେ ଦେଖି ସମବେଦନା ଜଣାଇ କହିଥାନ୍ତି, ଆହା ! ମା' ଛେଉଣ୍ଡ ପିଲାଟାଏ । କେତେକ ମଧ୍ୟ କହିଥାନ୍ତି, "ଯାହାର ମା' ନାହିଁ ତାହାର ନାଆଁ ନାହିଁ।" ଏହି ସବୁ କଥା ଅକ୍ଷରେ ଅକ୍ଷରେ ସତ । ମା' ନଥିବା ଶିଶୁ ସବୁବେଳେ ଅବହେଳିତ ହୋଇଥାଏ। ସ୍ନେହ ଶ୍ରଦ୍ଧାରୁ ବଞ୍ଚିତ ହୋଇଥାଏ।

ମାତ୍ର ଆମ ପୃଥିବୀ ପୃଷ୍ଠରେ ଏପରି କେତେକ ଜୀବଜନ୍ତୁ ଅଛନ୍ତି ଯେଉଁମାନେ ଜନ୍ମବେଳୁ ସେମାନଙ୍କର ମା'ମାନଙ୍କୁ ହରାଇ ଥାଆନ୍ତି।

କେତେକ କୀଟ ପତଙ୍ଗ ଅଣ୍ଡା ଦେଇ କୁଆଡ଼େ ଗୁଲିଯାଆନ୍ତି । ଅଣ୍ଡାରୁ ଛୁଆ ଫୁଟି ନିଜେ ନିଜେ ବଡ଼ ହୋଇଥାଏ । ମଥ, ପ୍ରଜାପତି ପ୍ରଭୃତି ଏହି ଶ୍ରେଣୀର । ସେହିପରି କଇଁଛ, କୁମ୍ଭୀର ପ୍ରଭୃତି ଉଭୟଚର ଜୀବ-ମାନେ ଅଣ୍ଡା ଦେବା ପରେ ଅଣ୍ଡା ଫୁଟିବା ଯାଏ ଏହାର ଦେଖାଶୁଣା କରିଥାନ୍ତି ମାତ୍ର ଅଣ୍ଡାରୁ ଛୁଆ ବାହାରିବା ପରେ ଏମାନେ ଅଣ୍ଡାକୁ ଛାଡ଼ି ଅନ୍ୟ ଆଡ଼େ ଗୁଲିଯାଆନ୍ତି । ଅଣ୍ଡା ଦେବା ପରେ ବା ଛୁଆ ଜନ୍ମ-ଦେବା ପରେ କେତେକ ମା' ମୃତ୍ୟୁବରଣ କରିଥାଆନ୍ତି । ତେଣୁ ସେମାନଙ୍କର ଶିଶୁ ମା' କ'ଣ ଜାଣିନଥାଏ । ଏହିପରି ମୃତ୍ୟୁବରଣ କରୁଥିବା ମା' ଲେଉଣ୍ଡି ଶିଶୁ ହେଲା ବୁଢ଼ୀଆଣୀ ।


ବୁଢିଆଣୀ

ତୁମ୍ଭେମାନେ ସମସ୍ତେ ବୁଢ଼ୀଆଣୀକୁ ଦେଖିଛ । ଘରର ଦୁଇଗୁଳ, ଗଛ ଡାଳ, ବାଡ଼ ବଗିଗୁରେ ଏହା ଏକ ସୁନ୍ଦର ସରୁ ସୂତାର ଜାଲ ବୁଣି ଜଗି ବସିଥାଏ । ବଡ଼ ସକାଳୁ କାକର ଏହି ଜାଲରେ ପଡ଼ି କିପରି ଝକ୍ ଝକ୍ କରୁଥାଏ ତାହା ତ ତୁମ୍ଭେମାନେ ଦେଖିଥିବ । କୌଣସି

ଶ୍ରେଷ୍ଟ କୀଟ ପତଙ୍ଗ ଏହି ଜାଲରେ ପଡ଼ିଗଲେ ସେ ସଙ୍ଗେ ସଙ୍ଗେ କୁଆଡ଼େ ଥାଏ ଆସି ପୋକକୁ ତା'ର ସରୁ ସୂତା ସାହାଯ୍ୟରେ ଗୁଡ଼ାଇ ପକାଏ । ପୋକ ଆଉ ପଳାଇବାକୁ ଯାଇ ନପାରି ମୃତ୍ୟୁ ବରଣ କରେ ଏବଂ ବୁଢ଼ୀଆଣୀ ଏହାକୁ ନିଜର ଖାଦ୍ୟ ରୂପେ ବ୍ୟବହାର କରିଥାଏ ।

ପୃଥିବୀ ପୃଷ୍ଠର ପ୍ରାୟ ସବୁ ଅଞ୍ଚଳରେ ବିଭିନ୍ନ ପ୍ରକାରର ବୁଢ଼ୀଆଣୀ ଦେଖାଯାଇଥାନ୍ତି । ମରୁଭୂମି ଠାରୁ ଆରମ୍ଭ କରି ପାହାଡ଼, ପର୍ବତ, ଜଙ୍ଗଲ, ନଦୀଶଯ୍ୟା, ସନ୍ତସନ୍ତିଆ ଅଞ୍ଚଳ ସବୁଆଡ଼େ ଏମାନେ ଦେଖାଯାଇଥାନ୍ତି । କେତେକ ବୁଢ଼ିଆଣୀ ପାଣି ଭିତରେ ଏକ ବାୟୁ-ପୂର୍ଣ୍ଣ ପାଣି ଫୋଟକା ଘରେ ରହିଥାଆନ୍ତି । ଏବଂ କେତେକ ଭୂମିରେ ଗାତ କରି ରହିଥାନ୍ତି । ବୁଢ଼ିଆଣୀର ଶରୀର ଦୁଇ ଭାଗରେ ବିଭକ୍ତ । ମୁଣ୍ଡ ଓ ପେଟ ବା ଶରୀର । ଏହା ବ୍ୟତୀତ ଏହାର ଆଠଗୋଟି ଗୋଡ଼ । ଶରୀରର ଶେଷ ଭାଗରେ ଥିବା ସ୍ପିନେରିଟସ ନାମକ ଗ୍ରନ୍ଥିରୁ ଏହା ସିଲକ ପ୍ରସ୍ତୁତ କରି ଜାଲ ବୁଣିଥାଏ । ଏହି ସିଲକ ସୂତା ପଦାକୁ ବାହାରିବା ବେଳେ ସ୍ପିନେରିଟସରେ ଥିବା ବହୁ ଶ୍ରେଷ୍ଟ ଶ୍ରେଷ୍ଟ କଣା ବା ପଥ ମଧ୍ୟ ଦେଇ ବାହାରକୁ ଆସିଥାଏ ଏବଂ ଏହା ବାୟୁ ସମ୍ପର୍କରେ ଆସିବା ମାତ୍ରେ ଅଠାଳିଆ ହୋଇଯାଏ । ବୁଢ଼ୀଆଣୀ ଏହି ସିଲକ ସୂତାରୁ ନିଜର ଜାଲ, ରହିବା ଘର, ଅଣ୍ଡାଦେବା ସ୍ଥାନ ବା ଥଳୀ ତିଆରି କରିଥାଏ ଏବଂ ଏକ ଉଚ୍ଚସ୍ଥାନରୁ ତଳକୁ ଆସିବାକୁ ହେଲେ ଏହି ସୂତାର ସାହାଯ୍ୟ ନେଇଥାଏ । ଅନେକ ସମୟରେ ନିଜର ଆତ୍ମରକ୍ଷା ପାଇଁ ବୁଢ଼ୀଆଣୀ ଏହି ସିଲକ ସୂତାକୁ ବ୍ୟବହାର କରିଥାଏ । ପୃଥିବୀ ପୃଷ୍ଠର କୌଣସି ପ୍ରାଣୀ ଏପରି ସିଲ୍‌କ ସୂତା ଏତେ କାର୍ଯ୍ୟରେ ବ୍ୟବହାର କରିନଥାନ୍ତି । ଏହାର ଗୋଡ଼ରେ ଏକ ପ୍ରକାର ପ୍ୟାଡ଼ ବା କୋମଳ ଅଙ୍ଗ ଥିବାରୁ ଏହା ସହଜରେ ଯେ କୌଣସି ଅବସ୍ଥାରେ ଝୁଲିପାରେ । ସାଧାରଣତଃ ଏହାର ଆଠୋଟି ଆଖି । ମାତ୍ର ଗୋଟିଏ ଆଖି ସବୁଠାରୁ ତୀବ୍ର ଅନୁଭବ ଶକ୍ତି ସମ୍ପନ୍ନ ହୋଇଥାଏ ।

କେତେକ ବୁଢ଼ୀଆଣୀ ୩ ଇଞ୍ଚ ବା ତା'ଠାରୁ ବଡ଼ ହୋଇଥିବା ସ୍ଥଳେ କେତେକ ଖାଲି ଆଖିକୁ ଦିଶନ୍ତି ନାହିଁ । ଏହାର ରଙ୍ଗ ବିଭିନ୍ନ

ପ୍ରକାରର ହୋଇଥାଏ । ନାଲି, ନେଳି, ହଳଦିଆ, ସବୁଜ, କଳା, ଧଳା ବିଭିନ୍ନ ପ୍ରକାର ବୁଢ଼ୀଆଣୀ ପୃଥିବୀର ବିଭିନ୍ନ ଅଞ୍ଚଳରେ ଦେଖା-ଯାଇଥାନ୍ତି । ମୃତ ଜୀବଜନ୍ତୁ ବା ଉଦ୍ଭିଦକୁ ଏହା କେବେ ଖାଏନାହିଁ । ଜାଲରେ ଶୀକାର ଧରି ସାରିବା ପରେ ଏହାର ୮ଟି ଗୋଡ଼ର ଅଗ୍ର-ଭାଗରେ ଥିବା ଛୋଟ ଛୋଟ ଛୁଞ୍ଚି ଦ୍ୱାରା ତଥା ଶରୀରରୁ ସୃଷ୍ଟି କରୁଥିବା ବିଷାକ୍ତ ପଦାର୍ଥ ଦ୍ୱାରା ଏହା ଶୀକାରକୁ ଆଘାତ କରି ଏବଂ ସିଲ୍କ ସୂତା ଏହାର ଚାରିପାଖରେ ଗୁଡ଼ାଇ ଏହାକୁ ଅଣନିଶ୍ୱାସୀ କରି ମାରି ଦେବା-ପରେ ଖାଇଥାଏ ।

କେତେକ ବୁଢ଼ୀଆଣୀ ଜାଲ ନବୁଣି ପତ୍ରରେ ଛୋଟ ଘର କରି ଲୁଚି ବସିଥାନ୍ତି । କୌଣସି କୀଟପତଙ୍ଗ ସେଠାକୁ ଗଲେ ସେମାନଙ୍କୁ ମାଡ଼ି ବସି ଧରି ଖାଇଥାନ୍ତି । ୟୁରୋପର ବିଭିନ୍ନ ଅଞ୍ଚଳରେ ଦେଖାଯାଉଥିବା



( ପକ୍ଷୀ ଖାଉଥିବା ଏକ ଶ୍ରେଣୀର ବୁଢ଼ିଆଣୀ )

ହାବ ଜାତିର ବୁଢ଼ୀଆଣୀ ଫୁଲ ମଧ୍ୟରେ ଲୁଚି ରହିଥାଏ । କୀଟ ପତଙ୍ଗ ଫୁଲ ଭିତରକୁ ପଶିଗଲେ ସେମାନଙ୍କୁ ଧରି ଖାଇଥାଏ । ଯେଉଁ ପରି ଶସବଶସ ହୋଇଥିବା ବ୍ରିଟେନରେ ଦେଖାଯାଉଥିବା ଯେଉଁ ବୁଢ଼ୀ-ଆଣୀ ମଧ୍ୟ ଏକ ଅଦ୍ଭୁତ ପ୍ରକାର କୌଶଳ ଅବଲମ୍ବନ କରି ଖାଦ୍ୟ ଧରିଥାଏ । ଅଷ୍ଟ୍ରେଲିଆରେ ଦେଖାଯାଉଥିବା ଏକ ପ୍ରକାର ବୁଢ଼ୀଆଣୀ

ଏକ ଲମ୍ବା ସୂତା ନିଜ ଦେହରୁ ବାହାର କରିଥାଏ ଏବଂ ଏହି ସୂତାର ଅଗ୍ରଭାଗ ଗୋଲାକାର ହୋଇ ଚନ୍ଦ୍ରରଶ୍ମି ଏହା ଉପରେ ପଡ଼ି ଚକଚକ୍ କରୁଥାଏ । କୀଟପତଙ୍ଗ ଏଥିରେ ଆକୃଷ୍ଟ ହୋଇ ଆସି ଏହା ଉପରେ ବସିପଡ଼ିଲେ ଆଉ ଯାଇ ନପାରି ଏଥିରେ ଲାଗି ରହନ୍ତି ଏବଂ ବୁଢ଼ୀଆଣୀ ଏମାନଙ୍କୁ ସହଜରେ ଧରି ଖାଏ । ଦକ୍ଷିଣ ଆମେରିକାରେ ଦେଖା-ଯାଉଥିବା ରାକ୍ଷସ ବୁଢ଼ୀଆଣୀ ପକ୍ଷୀମାନଙ୍କୁ ମଧ୍ୟ ଶୀକାର କରି ଖାଏ । ସେହିପରି ରକି ପର୍ବତାଞ୍ଚଳରେ ଦେଖାଯାଉଥିବା ଏକ ଶ୍ରେଣୀର



( ମାଛ ଖାଉଥିବା ଏକ ଶ୍ରେଣୀର ବୁଢ଼ିଆଣୀ )

ବୁଢ଼ୀଆଣୀ ମାଛମାନଙ୍କୁ ଧରି ମାଛ ଖାଇଯାଏ । ଏମାନଙ୍କୁ ସାଧା-ରଣତଃ ଡୋଲମେଡ଼ ବୁଢ଼ୀଆଣୀ କୁହାଯାଏ ।

ପୁରୁଷ ବୁଢ଼ିଆଣୀ ସ୍ତ୍ରୀ ବୁଢ଼ିଆଣୀ ଠାରୁ ଶ୍ରେଷ୍ଠ । ପ୍ରଜନନ ପରେ ଅଧିକାଂଶ ସମୟରେ ସ୍ତ୍ରୀ ବୁଢ଼ୀଆଣୀ ପୁରୁଷ ବୁଢ଼ୀଆଣୀକୁ ଖାଇ-ଦେଇଥାଏ । ସ୍ତ୍ରୀ ବୁଢ଼ିଆଣୀ ନିଜେ ତିଆରି କରିଥିବା ଏକ ଖୋସାରେ ଅଣ୍ଡା ଦେଇଥାଏ । ଏକ ପ୍ରକାର ସ୍ୱତନ୍ତ୍ର ସିଲ୍କ ସୂତାରେ ମାଈ ବୁଢ଼ୀଆଣୀ ଏହି ଖୋସାକୁ ତିଆରି କରିଥାଏ । ଏହାର ଆକାର ବିଭିନ୍ନ ଆକୃତିର ହୋଇଥାଏ । ଅଣ୍ଡା ଦେବା ପରେ ପରେ ମାଈ ବୁଢ଼ୀଆଣୀ

ସାଧାରଣତଃ ମରଯାଏ । ଓଲଫ ବୁଢ଼ୀଆଣୀ କ୍ଷେତ୍ରରେ ଅଣ୍ଡାରୁ ଛୁଆ ଫୁଟିବା ଯାଏ ମାଈ ବୁଢ଼ୀଆଣୀ ବଞ୍ଚି ରହିଥାଏ ମାତ୍ର ପରେ ପରେ ମରିଯାଏ ।

ଅନ୍ୟାନ୍ୟ କୀଟ ପତଙ୍ଗମାନେ ଅଣ୍ଡାରୁ ବଡ଼ ହେବାଯାଏ ବିଭିନ୍ନ ଅବସ୍ଥା ଦେଇ ଗତି କରି ଶେଷରେ ବଡ଼ ହୋଇଥାନ୍ତି । ମାତ୍ର ବୁଢ଼ୀଆଣୀ ଛୁଆ ସିଧା ଶ୍ରେଷ୍ଠ ବୁଢ଼ୀଆଣୀ ଆକୃତିର ହୋଇ ଜନ୍ମ ହୋଇଥାଏ ଏବଂ କ୍ରମେ ବଢ଼ିଥାଏ । ବଡ଼ ହେବା ପରେ ଏହା ଶରୀରରୁ ଚୋପା ଛାଡ଼ି-ଯାଏ । ଖାଦ୍ୟାଭାବରୁ ଶିଶୁ ବୁଢ଼ୀଆଣୀ ନିଜର ଭାଇଭଉଣୀ ଶିଶୁ ବୁଢ଼ୀ-ଆଣୀମାନଙ୍କୁ ଖାଇ ବଞ୍ଚିଥାଏ ଏବଂ ଅବହେଳିତ ଅବସ୍ଥାରେ ବଢ଼ିଥାଏ । ଅଣ୍ଡାରୁ ଫୁଟିବା ପରେ ଏହା ନିଜ ଇଚ୍ଛା ଅନୁସାରେ ଯେ କୌଣସି ଆଡ଼କୁ ଚାଲିଯାଏ । ସରୁ ସୂତା ନିଜ ଦେହରୁ ବାହାର କରି ପବନରେ ଉଡ଼ି ଉଡ଼ି ଏହା ଜନ୍ମସ୍ଥାନରୁ ପ୍ରାୟ ୨୦୦ ମାଇଲ ଦୂରଯାଏ ଚାଲିଯିବାର ଦେଖାଯାଇଛି । ବେଙ୍ଗ, ଏଣ୍ଡୁଅ, କେତେକ ପକ୍ଷୀ ଅନେକ ସମୟରେ ଶିଶୁ ବୁଢ଼ିଆଣୀମାନଙ୍କୁ ଖାଇଯାଆନ୍ତି । ଏମାନଙ୍କ ହାତରୁ ନିଜକୁ ରକ୍ଷା କରିବାକୁ ବୁଢ଼ିଆଣୀ ବିଭିନ୍ନ ପନ୍ଥା ଅବଲମ୍ବନ କରିଥାଏ । ଇଂଲଣ୍ଡରେ ଦେଖାଯାଉଥିବା କେତେକ ବୁଢ଼ିଆଣୀ ସେଥିପାଇଁ ବହୁ ଦ୍ୱାର ବିଶିଷ୍ଟ ଘର ତିଆରି କରିଥାଆନ୍ତି ଏବଂ ଶତ୍ରୁ ଆକ୍ରମଣ କଲେ ଯେ କୌଣସି ଦ୍ୱାର ମଧ୍ୟ ଦେଇ ଖସି ଚାଲିଯାଆନ୍ତି । ପାଣିରେ ରହୁଥିବା ବୁଢ଼ିଆଣୀ ପାଣି ଭିତରେ ଏକ ପାଣି ଫୋଟକା ମଧ୍ୟରେ ରହିଥାଏ ଏବଂ ବାୟୁଥିବା ଏହି ଫୋଟକା ମଧ୍ୟରେ ମଧ୍ୟ ଅଣ୍ଡା ଦେଇଥାଏ ।

କଳା ରଙ୍ଗର କେତେକ ବୁଢ଼ୀଆଣୀ ବିଷାକ୍ତ ହୋଇଥିବାରୁ ମାରାତ୍ମକ । ଆଫ୍ରିକା, ଅଷ୍ଟ୍ରେଲିଆ ଓ ୟୁରୋପରେ ଦେଖା ଯାଉଥିବା "ବ୍ଲାକ ଉଇଡ଼ୋ ସ୍ପାଇଡ଼ର" କାମୁଡ଼ିଲେ ବହୁ ଯନ୍ତ୍ରଣା ହୋଇଥାଏ, ଏପରିକି ମଣିଷ ମୃତ୍ୟୁ ମଧ୍ୟ ବରଣ କରିଥାଏ । ସାଧାରଣ ବୁଢ଼ିଆଣୀ ପ୍ରାୟ ଏକ ବର୍ଷ ବଞ୍ଚିଥିବା ବେଳେ ମାଛ ଖାଉଥିବା ଡୋଲମିଡ଼ସ୍ ବୁଢ଼ିଆଣୀ ପକ୍ଷୀ ଶିକାର କରୁଥିବା ମ୍ୟାଗେଲ ଶ୍ରେଣୀର ବୁଢ଼ିଆଣୀ ଓ

ଗ୍ରୀଷ୍ମମଣ୍ଡଳରେ ଦେଖାଯାଉଥିବା ରାକ୍ଷସ ବୁଢ଼ିଆଣୀ ପ୍ରାୟ ୧୫ ବର୍ଷ ଯାଏ ବଞ୍ଚି ରହିଥିବାର ଦେଖାଯାଏ ।

ବୁଢ଼ିଆଣୀ ଠାରୁ ଆମେ ବହୁ ଉପକାର ପାଇଥାଉ । କେତେକ ବୁଢ଼ିଆଣୀରୁ ସିଲ୍କ ସଂଗ୍ରହ କରାଯାଇ ଉଟପେନ ତିଆରି ତଥା ଅନ୍ୟାନ୍ୟ କେତେକ କାର୍ଯ୍ୟରେ ବ୍ୟବହୃତ ହୋଇଥାଏ । ଆମେରିକାର ଗବେଷକ ନନ ପୋଙ୍ଗର ହୃକ ବହୁ ବୁଢ଼ିଆଣୀ ରଖି ସେମାନଙ୍କ ଉପରେ ଗବେଷଣା କରି ବହୁ ପ୍ରକାର ସିଲ୍କ ସଂଗ୍ରହ କରି ପାରିଛନ୍ତି ଏବଂ ଏହି ସିଲ୍କ ବିଭିନ୍ନ ପ୍ରକାର କାର୍ଯ୍ୟରେ ଲାଗି ପାରୁଛି । ସେ ମଧ୍ୟ ବୁଢ଼ିଆଣୀ ମାନଙ୍କ ରକ୍ଷଣାବେକ୍ଷଣ ଓ ଗବେଷଣା ପାଇଁ ଏକ ବିରାଟ ଗବେଷଣାଗାର ପ୍ରତିଷ୍ଠା କରିଛନ୍ତି ।



# ଛତା ଉଦ୍ଭିଦ ଛତୁ

ତୁମେମାନେ ସବୁ ତ ବର୍ଷାଦିନେ ଛତୁ ତରକାରୀ ଖାଇଥିବ । ଏହା ଅତି ସୁସ୍ୱାଦୁ । ଏହି ଛତୁ ଉଦ୍ଭିଦ ସମ୍ପର୍କରେ ତୁମେମାନେ ବିଶେଷ କିଛି ଜାଣିଛ କି ? ବର୍ଷାଦିନେ ପଚା ନଡ଼ା, ଓଦା କାଠ, କାଠ ଗଣ୍ଡି ଓ ପଚା ସଢ଼ା ପଦାର୍ଥ ଉପରେ ଉଠିଥାଏ । ଏହି ଛତୁମାନଙ୍କ ମଧ୍ୟରୁ ଅଧିକାଂଶ ବିଷାକ୍ତ ଏବଂ ଆମର ଖାଦ୍ୟ ଉପଯୋଗୀ ନୁହେଁ । ମାତ୍ର ବାଡ଼ିବଗିଚାରେ ଦେଖାଯାଉଥିବା ଶ୍ୱେତ ଛତା ପରି ଏହି ଉଦ୍ଭିଦ ମଧ୍ୟରୁ କେତେକ ଖାଦ୍ୟ ଉପଯୋଗି ଏବଂ ସୁସ୍ୱାଦୁ ।



( ଛତୁ )

ଏହି ଛତୁ ଏକ ପରଜୀବୀ ଉଦ୍ଭିଦ ଏବଂ ସବୁଜକଣା ବିହୀନ ହୋଇଥିବାରୁ ଖାଦ୍ୟ ପାଇଁ ଅନ୍ୟ ଉପରେ ନିର୍ଭର କରିଥାଏ । ଅନ୍ୟାନ୍ୟ

ଉଦ୍ଭିଦମାନଙ୍କ ଭଳି ଏହାର ପତ୍ର, ଫୁଲ, ଫଳ କିଛି ନଥାଏ । ଗଛ ଗଣ୍ଡିରେ ଦେଖାଯାଉଥିବା ଛତୁ ଆଶ୍ରୟ ନେଇଥିବା ଗଛ ଦେହରୁ ଖାଦ୍ୟ ସଂଗ୍ରହକରି ବଞ୍ଚିଥାଏ । ମାଟିରେ ଦେଖାଯାଉଥିବା ଛତୁ ପଚି ଗଛ ପତ୍ରରେ ସଞ୍ଚିତ ଥିବା ଖାଦ୍ୟ ଖାଇ ବଞ୍ଚିଥାନ୍ତି । ଆମେ ଛତୁ ଦେହରେ ହାତ ମାରିଲେ ଏକ ଧଳା ଧଳା ପାଉଁଶିଆ ପାଉଡ଼ର ହାତରେ ଲାଗିଯାଏ । ଏହା ପ୍ରକୃତରେ ଛତୁର ସୂକ୍ଷ୍ମ ବୀଜ ବା ରେଣୁ । ଏହି ପରି ବୀଜାଣୁ ସାଧାରଣତଃ ପ୍ରତ୍ୟେକ ପୁଷ୍ପ ବିହୀନ ଉଦ୍ଭିଦରେ ଥାଏ । ଲକ୍ଷ ଲକ୍ଷ ସଂଖ୍ୟାରେ ଛତୁର ରେଣୁ ପବନରେ ସବୁବେଳେ ଉଡ଼ୁଥିଲି ଅନୁକୂଳ ବାତାବରଣରେ ପଡ଼ିଲେ ସେଥିରୁ ନୂଆ ଛତୁଗଛର ସୃଷ୍ଟି ହୋଇଥାଏ । ଲକ୍ଷ ଲକ୍ଷ ବୀଜାଣୁ ମଧ୍ୟରୁ ଖୁବ୍ କମ୍ ବଞ୍ଚିରହି ନୂତନ ଛତୁ ସୃଷ୍ଟି କରିଥାନ୍ତି । ଅନ୍ୟ ଗୁଡ଼ିକ ସବୁ ପ୍ରାୟ ମରିଯାଇଥାନ୍ତି । ଏହି ରେଣୁ ଓଦା, ଗରମ ଓ ଛାଇ ସ୍ଥାନରେ ପଡ଼ିଲେ ସେଥିରୁ ନୂତନ ଛତୁ ଗଛ ସୃଷ୍ଟି ହୋଇଥାଏ ।

ଏକ ନୂତନ ସ୍ଥାନରେ ଛତୁର ରେଣୁ ପଡ଼ିବା ପରେ ଏହି ରେଣୁ ମାଟିରୁ ବା ଆଶ୍ରୟ ନେଇଥିବା ସ୍ଥାନରୁ ଜଳ ଗ୍ରହଣ କରି ମୋଟା ହୋଇ ଫୁଲିଯାଏ ଏବଂ ଏହି ରେଣୁର ଗୋଟିଏ ଅଂଶରୁ ଏକ ସରୁ ଲମ୍ବା ସୂତାପରି ପଦାର୍ଥ କ୍ରମାଗତ ବଢ଼ିବାକୁ ଲାଗେ । ଏହି ସରୁ ସୂତାପରି ଲମ୍ବା ଅଙ୍ଗ ସାହାଯ୍ୟରେ ଏହା ଆଶ୍ରୟ ନେଇଥିବା ଉଦ୍ଭିଦ ଦେହରୁ ଖାଦ୍ୟ ସଂଗ୍ରହ କରିଥାଏ ।

ଏହି ସରୁ ସୂତା ପରି ଅଙ୍ଗ ଖାଦ୍ୟ ସଂଗ୍ରହ କରି କ୍ରମାଗତ ଭାବରେ ବିଭକ୍ତ ହୋଇ ଅନ୍ୟାନ୍ୟ ଗଛର ମୂଳ ପରି ବହୁ ଶାଖା-ପ୍ରଶାଖାରେ ବିଭକ୍ତ ହୁଏ । ମୂଳ ପରି ଏହି ଅଂଶକୁ ମାଇସିଲିୟମ୍ କୁହାଯାଏ । ଏହାପରେ ଏହି ସୂତାପରି ଅଂଶର ଗୋଟିଏ କୋଣରୁ ଏକ ଛୋଟ କଢ଼ ପରି ପଦାର୍ଥ ସୃଷ୍ଟି ହୁଏ । ଏହା କ୍ରମେ ବଢ଼ି ବଢ଼ି ଆମ ଆଙ୍ଗୁଠିର ଅଗ୍ରଭାଗ ଆକୃତିରେ ହୁଏ । ଏହାପରେ ଉପଯୁକ୍ତ ଜଳ-ବାୟୁରେ ଏହି କଢ଼ ଭୂମି ଫଟାଇ ପଦାକୁ ବାହାରି ଆସି ଏକ ଛତୁରେ ପରିଣତ ହୁଏ । ଏହାର ଛତା ପରି ଅଂଶ କ୍ରମେ ବଢ଼ିଥାଏ ।

ସାଧାରଣତଃ ଛତୁର ଛଣ ପରି ଅଂଶର ଭିତର ପାଖରେ ଗାଲ ପରି ବାଇଗଣି ରଙ୍ଗର ଧାର ଧାର ପଦାର୍ଥ ଥାଏ । ଏହାକୁ ଗିଲ ବା ଲ୍ୟାମେଲା କୁହାଯାଏ । ଏହି ଗିଲ ବା ଲ୍ୟାମେଲା ଦେହରେ ଛତୁ ବୀଜାଣୁ ସୃଷ୍ଟି ହୋଇଥାନ୍ତି । ବୀଜାଣୁ ଗୁଡ଼ିକ ପାଚିଗଲେ ବା ହୃଷ୍ଟପୁଷ୍ଟ ହେବା ପରେ କେତେକ ତଳେ ପଡ଼ିଥାନ୍ତି ଓ ଆଉ କେତେକ ପବନ ସାହାଯ୍ୟରେ ଦୂରକୁ ଚାଲିଯାଇଥାନ୍ତି । ବୀଜାଣୁ ସୃଷ୍ଟି ହେବା ପରେ ଛତୁର ଛତାପରି ଅଂଶ ସାଧାରଣତଃ ମରିଯାଇଥାଏ ମାତ୍ର ମାଟି ଭିତରେ ଥିବା ସରୁ ସୂତାପରି ଛତୁ ଉଦ୍ଭିଦର ଅଂଶ ବଞ୍ଚି ରହିଥାଏ ଏବଂ ଉପଯୁକ୍ତ ଆଦ୍ର ଜଳବାୟୁ ପାଇଲେ ଏବଂ ଉପଯୁକ୍ତ ଖାଦ୍ୟ ପାଇଲେ ଏହା ଦେହରୁ ପୁଣି କଢ଼ ସୃଷ୍ଟି ହୋଇ ନୂତନ ଛତୁ ଗଛର ସୃଷ୍ଟି ହୋଇଥାଏ । ବିଭିନ୍ନ ଆକୃତିର ଛତୁ ପୃଥିବୀର ବିଭିନ୍ନ ଅଞ୍ଚଳରେ ଦେଖାଯାଇଥାଏ ।

କେତେକ ଛତା ଆକୃତିର ହୋଇଥାଏ । ବିଭିନ୍ନ ଛତୁର ବୀଜାଣୁ ବହୁ ରଙ୍ଗର ହୋଇଥାଏ । ଧଳା, ହଳଦିଆ, କଳା ରଙ୍ଗର ବୀଜାଣୁ ସାଧାରଣତଃ ଦେଖାଯାଇଥାଏ । ସାରା ପୃଥିବୀରେ ଦେଖାଯାଉ-ଥିବା ଛତୁ ମଧ୍ୟରୁ ପ୍ରାୟ ୨୦୦ ଶ୍ରେଣୀର ବିଭିନ୍ନ ଆକୃତିର ଛତୁ ଆମର ଖାଦ୍ୟ ଉପଯୋଗୀ । ଏମାନଙ୍କ ମଧ୍ୟରୁ ୧୨ ପ୍ରକାରର ଛତୁ ଅତି ବିଷାକ୍ତ ।

ଗଛର ଗଣ୍ଡିରେ ଉଠୁଥିବା ସଲଫର ଛତୁ ଦେଖିବାକୁ ଅତି ସୁନ୍ଦର । ଏହା ଘରର ସେଲଫ ବା ଥାକ ପରି ହୋଇଥିବାରୁ କେତେକ ଏହାକୁ ଥାକ ଛତୁ କହିଥାନ୍ତି । ଏହାର ରଙ୍ଗ ଗାଢ଼ ହଳଦିଆ ହୋଇ-ଥାଏ । ସାଧାରଣତଃ ଏହି ଥାକ ଛତୁ ଉଠିଥିବା ଗଛ ଅଳ୍ପଦିନ ପରେ ମୃତ୍ୟୁ ବରଣ କରିଥାଏ କାରଣ ଏହି ଛତୁର ଶୁଣ୍ଢ ବାହାର ଆଶ୍ରୟଦାତା ଗଛ ଭିତରେ ପଶିଯାଇ ସବୁ ଖାଦ୍ୟ ଟାଣି ଆଣନ୍ତି ଏବଂ ଏକ କଣା ସୃଷ୍ଟି କରିଥାନ୍ତି ଯାହାଦ୍ୱାରା କୀଟପତଙ୍ଗ ଗଛର କାଣ୍ଡ ଭିତରକୁ ପଶିଯାଇ ଗଛର କାଣ୍ଡକୁ ଖାଇଯାଇଥାନ୍ତି ।

ଘରର ଗୃହ ଇତ୍ୟାଦିରେ ଧଳା ଫ୍ଲେଟ ପେଣ୍ଡୁ ଆକୃତିର ଅନ୍ୟ ଏକ ଜାତିର ଛତୁ ଦେଖାଯାଆନ୍ତି ଏହାକୁ ପୁଫ ବଲ ଛତୁ କୁହାଯାଏ । ବାସ୍କେଟବଲର ବଲ ଠାରୁ କେତେକ କ୍ଷେତ୍ରରେ ଏହି ଛତୁ ଆକାରରେ ବଡ଼ ହୋଇଥାଏ । ଏହା ଖାଦ୍ୟ ଉପଯୋଗୀ । ପାକଳ ହେବା ପରେ ଏହାର ବଲ ଅଂଶର ଉପର ଭାଗରେ କୋଟି କୋଟି ସଂଖ୍ୟାରେ ଧଳା ବୀଜାଣୁ ଲାଗି ରହିଥାଆନ୍ତି । ଏକ ଏକ ଧଳା ଧୂଳିର ଆସ୍ତରଣ ସୃଷ୍ଟି କରିଥାନ୍ତି !

ଆର୍ଥ ଷ୍ଟାର ଛତୁର ଆକୃତି ଏକ ତାରା ପରି ହୋଇଥାଏ । ପାକଳ ହେଲେ ଅନ୍ୟାନ୍ୟ ଶ୍ରେଣୀର ଛତୁ ପରି ଏଥିରୁ ହଜାର ହଜାର ସଂଖ୍ୟାରେ ବୀଜାଣୁ ବାହାରି ଥାଆନ୍ତି । ଏହି ବୀଜାଣୁଗୁଡ଼ିକ ଉକ୍ତ ଛତୁରୁ ଉପର ଅଂଶରେ ଥିବା ଏକ ଫ୍ଲେଟ କଣା ବାଟଦେଇ ବାହାରକୁ ଆସିଥାନ୍ତି । ଏହାର ଆକାର ୨।୩ ଇଞ୍ଚ ଯାଏ ହୋଇଥାଏ । ଏହାକୁ ପାଣିପାଗ ନିୟନ୍ତ୍ରଣ ଯନ୍ତ୍ର ମଧ୍ୟ କୁହାଯାଏ । କାରଣ ଖରା ପାଗରେ ଏହି ଛତୁ ନିବୁଜ ହୋଇ ରହିଥାଏ । ବର୍ଷା ଆସିବାର ଆଭାସ ପାଇଲେ ଏହା ଆପେ ଆପେ ଖୋଲିଯାଇ ଫୁଟିଉଠେ ।

ଛତୁ ଆମମାନଙ୍କର ବହୁ ଉପକାର କରେ । ଏହା ଆମକୁ ପୁଷ୍ଟିସାର ଖାଦ୍ୟ ଯୋଗାଇବା ସଙ୍ଗେ ସଙ୍ଗେ ମାଟିରେ ଥିବା ଗଛ ପତ୍ରକୁ ପଚାଇ ମାଟିକୁ ଉର୍ବର କରିଥାଏ । ଆମେ ସୁନ୍ଦର ଦିଶୁଥିବା ସବୁ ଛତୁକୁ ଖାଦ୍ୟ ଉପଯୋଗୀ ବୋଲି ଭାବି ଖାଇଦେବା ଆଦୌ ଉଚିତ ନୁହେଁ । ଏ ମାନଙ୍କ ମଧ୍ୟରୁ ଅଧିକାଂଶ ଅତ୍ୟଧିକ ବିଷାକ୍ତ । ଆମାନୀତା ନାମକ ଅତି ସୁନ୍ଦର ଦିଶୁଥିବା ଏକ ଶ୍ରେଣୀର ଛତୁକୁ ଆମେ ସୁନ୍ଦର ଦିଶୁଥିବାରୁ ଖାଦ୍ୟ ଉପଯୋଗୀ ବୋଲି ଭାବି ଯଦି ଆଣି ରାନ୍ଧି ଖାଇବା ତେବେ ଏହାର ବିଷ ଏତେ ଯେ ସାପକାମୁଡ଼ା ବିଷ ଠାରୁ ଏହା ଅତି ବିଷାକ୍ତ ହୋଇ-ଥିବାରୁ ମଣିଷକୁ ମାରିଦେବ । ତେଣୁ ଛତୁ ଖାଇବା ପୂର୍ବରୁ ସବୁବେଳେ ହୁସିଆର ହେବା ଆବଶ୍ୟକ ।



# ସମୁଦ୍ର ତାରା

ତୁମ୍ଭେମାନେ ସମସ୍ତେ ତ ତାରା ଦେଖିଛ । ଅନ୍ଧାର ରାତିରେ ଆକାଶକୁ ଚାହିଁଲେ ହଜାର ହଜାର ସଂଖ୍ୟାରେ ତାରାମାନେ ତୁମମାନଙ୍କ ଆଡ଼କୁ ଚାହିଁ ଆଖି ମିଟି ମିଟି କରନ୍ତି । ଖାଲି ଆଖିରେ ଆମ ଆଖିକୁ ଦିଶୁଥିବା ତାରାମାନଙ୍କ ସଂଖ୍ୟା ଠାରୁ ବହୁ ଗୁଣରେ ଅଧିକ ସଂଖ୍ୟକ ତାରା ଆକାଶରେ ଅଛନ୍ତି । ଏମାନଙ୍କ ଆକାର ମଧ୍ୟ ଆମ ପୃଥିବୀଠାରୁ କୋଟି କୋଟି ଗୁଣରେ ବଡ଼ । ଏହା ଆମଠାରୁ ବହୁ ଦୂରରେ ଥିବାରୁ ଆମକୁ ଏତେ ଛୋଟ ଦେଖାଯାଉଥାନ୍ତି । ସୂର୍ଯ୍ୟ ଆମର ଏକ ଛୋଟ ତାରା ।



( ତାରା ମାଛ )

ମାତ୍ର ତୁମକୁ ଆମ ପୃଥିବୀ ପୃଷ୍ଠରେ ଏହି ତାରା ଆକୃତିର ଏକ ପ୍ରାଣୀ ବିଷୟରେ କୁହାଯିବ । ତୁମେମାନେ ଯଦି କେବେ ସମୁଦ୍ରକୂଳକୁ

ଯାଇଥିବ ତେବେ ସମୁଦ୍ର ଲହରୀ କୂଳରୁ ଆସି ଚାଲିଗଲା ପରେ ବାଲି ଉପରେ ତାରା ପରି ଧପ ଧପ ହେଉଥିବା ୫ଟି ହାତ ଥିବା ଏକ ପ୍ରକାର ଅଦ୍ଭୁତ ଜୀବକୁ ହୁଏତ ଦେଖିଥିବ । ତାରା ପରି ଏହାର ୫ଟି ବାହୁ ଥିବାରୁ ଏହାକୁ ତାରାମାଛ କୁହାଯାଇଥାଏ । ମାତ୍ର ଏହା ତାରା ନୁହେଁ ବା ଏକ ମାଛ ବି ନୁହେଁ । ଏହା ସମୁଦ୍ରରେ ଥିବା ଏକ ପ୍ରାଣୀ । ପୃଥିବୀପୃଷ୍ଠର ପ୍ରାୟ ସବୁ ଅଞ୍ଚଳର ସମୁଦ୍ରରେ ଏହି ତାରାମାଛ ବା ଷ୍ଟାରଫିସ ଦେଖାଯାଇଥାଏ । ଏହାର ଥିବା ୫ଟି ବାହୁ ଓ ଦେହସାରା ଛୋଟ ଛୋଟ କଣ୍ଟାରେ ପୂର୍ଣ୍ଣ ହୋଇ ରହିଥିବାରୁ ଏହାକୁ କେତେକ ମଧ୍ୟ କଣ୍ଟାଯୁକ୍ତ ମାଛ କହିଥାନ୍ତି । ଏହି କଣ୍ଟାଦ୍ୱାରା ଶତ୍ରୁ ଆକ୍ରମଣରୁ ଏମାନେ ନିଜକୁ ରକ୍ଷା କରିଥାନ୍ତି । ଏହାର ରଙ୍ଗ ହଳଦିଆ, ସାଗୁଆ, ଓ ବିଭିନ୍ନ ରଙ୍ଗର ହୋଇଥାଏ ।

ଷ୍ଟାର ଫିସର ୫ଟି ବାହୁ ଭିତରେ ବହୁ ଜଳପୂର୍ଣ୍ଣ ନଳୀ ରହିଛି । ଏହି ଜଳ ପୂର୍ଣ୍ଣ ନଳୀରୁ ନଳୀପାଦ ବା ଟ୍ୟୁବ ଫିଟ ମଧ୍ୟ ସୃଷ୍ଟି ହୋଇଥାଏ ଏବଂ ଏହି ଟ୍ୟୁବଫିଟ ସାହାଯ୍ୟରେ ଏହା ଚଳପ୍ରଚଳ କରିଥାଏ ଓ ଖାଦ୍ୟ ସଂଗ୍ରହ କରି ଖାଇଥାଏ । ପ୍ରତି ଟ୍ୟୁବ ଫିଟର ଅଗ୍ରଭାଗରେ ଏକ ମୁଖ ଥାଏ ଯାହା ସାହାଯ୍ୟରେ କଠିନ ଟାଣ ପଥର ବା ଯେ କୌଣସି ସ୍ଥାନରେ ଷ୍ଟାରଫିସ ନିଜକୁ ଖୁବ ଯୋରରେ ଧରିରଖେ । ଏହା ଦେହରେ ଥିବା ସବୁ ଜଳପୂର୍ଣ୍ଣ ନଳୀ ଏକ ମୁଖ୍ୟ ନଳୀ ସହିତ ସଂଯୁକ୍ତ ହୋଇଥାଏ ।

ସାମୁକା ଓ ଚେଣ୍ଡା ସାଧାରଣତଃ ଷ୍ଟାରଫିସର ମୁଖ୍ୟ ଖାଦ୍ୟ । ଗୋଟିଏ ସାମୁକା ଦେଖିଲେ ଷ୍ଟାରଫିସ ତାହାର ବାହୁ ଦ୍ୱାରା ଏହାକୁ ଚାରିଆଡୁ ଘେରିଯାଏ ଏବଂ ନିଜର ଟ୍ୟୁବଫିଟ ଦ୍ୱାରା ଏହାକୁ ଟାଣିରଖେ । ସାମୁକାର ଉପର ଖୋଳପା ବହୁତ ଟାଣ ହୋଇଥିଲେ ମଧ୍ୟ ବହୁ ସମୟ ଧରି ଷ୍ଟାରଫିସ ଏହାକୁ ଟାଣିରଖି ଶେଷରେ ଏହାର ଖୋଳପାକୁ ଖୋଲି ସାମୁକା ଦେହର କଅଁଳିଆ ଅଂଶକୁ ନିଜେ ଖାଦ୍ୟ ରୂପେ ଗ୍ରହଣ କରିଥାଏ ।

ଷ୍ଟାରଫିସର ଏକ ଛୋଟ ମୁଖ, ଉନ୍ନତ ପାକସ୍ଥଳୀ ରହିଛି । ଷ୍ଟାରଫିସର ମସ୍ତିଷ୍କ ନାହିଁ । ମାତ୍ର ପାଞ୍ଚଟି ଛୋଟ ଛୋଟ ଆଖି ପ୍ରତ୍ୟେକ ବାହୁର ଶେଷ ଅଂଶରେ ରହିଛି । ଏକ ଘ୍ରାଣଶକ୍ତି ସମ୍ପନ୍ନ କୋଷ ରହି ଏହାକୁ ଗନ୍ଧ ଓ ଖାଦ୍ୟପଦାର୍ଥ ବାଛିବାରେ ସାହାଯ୍ୟ କରିଥାଏ । ଏହା ସାଧାରଣତଃ ଟ୍ୟୁବଫିଟରେ ରହିଥାଏ । ଏମାନେ ଆକାରରେ ବହୁତ ଛୋଟ । ସନଷ୍ଟାର ନାମକ ଏକ ଜାତିର ଷ୍ଟାରଫିସର ୧୩ଟି ବାହୁ ରହିଛି । ନାଲି ଧଳା ରଙ୍ଗର ଏକ ବିରାଟ ଆକୃତିର ଷ୍ଟାରଫିସ ମଧ୍ୟ କେତେକ ସ୍ଥାନରେ ଦେଖିବାକୁ ମିଳିଥାଏ । ସବୁ ଷ୍ଟାରଫିସ ଦେହରେ କଣ୍ଟା ଆକୃତିର ପଦାର୍ଥ ନାହିଁ । କେତେକଙ୍କର ଶରୀର ସାଧାସିଧା ଓ କଣ୍ଟାଯୁକ୍ତ । ବ୍ରିଟଲ ଷ୍ଟାର, ସମୁଦ୍ର ଲିଲି, ସମୁଦ୍ର କାକୁଡ଼ି, ଫିଦର ଷ୍ଟାର ଜାତୀୟ ସମୁଦ୍ରରେ ବାସ କରୁଥିବା ଜୀବମାନେ ଷ୍ଟାର ଫିସ ଶ୍ରେଣୀର ।

ଷ୍ଟାରଫିସ ସାଧାରଣତଃ ରାତି ସମୟରେ ପଦାକୁ ବାହାରି ଶୀକାର କରି ଖାଦ୍ୟ ସଂଗ୍ରହ କରିଥାଏ । ଦିନ ସମୟରେ ଏହା ପଥର ବା ଗଛ ସନ୍ଧିରେ ସମୁଦ୍ର ଭିତରେ ଲୁଚି ରହିଥାଏ । କେତେକ ସମୟରେ ଏହା ସମୁଦ୍ର ବାଲିରେ ପୋତି ହୋଇ ରହିଥାଏ । ଶିଶୁ ଷ୍ଟାରଫିସର ବାହୁ ନ ଥିବାରୁ ଏହା ଅନ୍ୟ ପ୍ରକାର ଦେଖାଯାଇଥାଏ । ଜନ୍ମ ହେବା ପରେ ଏହା ସମୁଦ୍ର ପାଣିରେ କିଛି ସମୟ ପହଁରିଥାନ୍ତି । ପରେ ସମୁଦ୍ରଶଯ୍ୟାରେ କୌଣସି କଠିନ ପଦାର୍ଥ ଦେହରେ ଲାଗିରହି ବଡ଼ ହେବାପରେ ଓ ଶରୀରରେ ସବୁ ବାହୁ ଇତ୍ୟାଦି ସୃଷ୍ଟି ହେବାପରେ ଯାଇ ସମୁଦ୍ର ଜଳକୁ ଆସିଥାନ୍ତି । ମାଆ ଷ୍ଟାରଫିସ ଏକାଥରକେ ହଜାର ହଜାର ଅଣ୍ଡା ଦେଇଥାଏ ମାତ୍ର ଏହି ଅଣ୍ଡାକୁ ବହୁ ସମୁଦ୍ର ପ୍ରାଣୀ ଖାଇଯାଉଥିବାରୁ ଖୁବ୍ କମ୍ ସଂଖ୍ୟକ ଅଣ୍ଡାରୁ ଛୁଆ ସୃଷ୍ଟି ହୋଇଥାଏ ।

ଷ୍ଟାରଫିସର ଏକ ଅଦ୍ଭୁତ ଗୁଣ ରହିଛି । ଯଦି କୌଣସି ଦୁର୍ଘଟଣାରେ ଷ୍ଟାରଫିସ ତାହା ଦେହର କୌଣସି ଅଙ୍ଗକୁ ହରାଏ ତେବେ ସେହି ସ୍ଥାନରେ କିଛିଦିନ ଭିତରେ ପୁଣି ନୂତନ ଅଙ୍ଗ ସୃଷ୍ଟି ହୋଇଥାଏ ।

ଏହା ଫଳରେ ଷ୍ଟାରଫିସ ଶତ୍ରୁ ଆକ୍ରମଣରେ ଆହତ ହେଲେ ମଧ୍ୟ ଖୁବ୍ ଶୀଘ୍ର ପୁଣି ସୁସ୍ଥ ହୋଇ ଉଠିଥାଏ ।

ଷ୍ଟାରଫିସ ଜାତିସୂ ଅନ୍ୟ ଏକ ପ୍ରାଣୀ ସମୁଦ୍ର କାକୁଡ଼ ବା ସି କୁକୁମ୍ବର ଦେହରେ ମଧ୍ୟ କଣ୍ଟାଯୁକ୍ତ ଅଂଶ ଥାଏ । ଏହାର ଆକୃତି କାକୁଡ଼ି ପରି ହୋଇଥିବାରୁ ଏହାର ନାମକରଣ ଏପରି କରାଯାଇଛି । ଏହାର ପାଟି କେତେକ ଶୁଣ୍ଢ଼ ଦ୍ୱାରା ଆବୃତ ହୋଇ ରହିଥାଏ । ଏହି



( ସମୁଦ୍ର କାକୁଡ଼ି )

ପ୍ରାଣୀ ଚୀନ ଦେଶର ଲୋକମାନଙ୍କର ପ୍ରିୟ ଖାଦ୍ୟ । ସମୁଦ୍ର କାକୁଡ଼ର ମଧ୍ୟ ଏକ ଅଦ୍ଭୁତ ଗୁଣ ରହିଛି । ଏହି ପ୍ରାଣୀ କୌଣସି ଏକ ଶତ୍ରୁକୁ ଦେଖିଲେ ତାହା ଶରୀରର କୌଣସି ଅଂଶକୁ ଏପରିକ ନିଜର ପାକ-ସ୍ଥଳୀକୁ ମଧ୍ୟ ଦେହ ମଧ୍ୟରୁ ଅଲଗା କରି ଶତ୍ରୁ ଆଗକୁ ପେଲି ଦିଏ । ଶତ୍ରୁ ଏହାକୁ ଖାଇ ଚାଲିଗଲା ପରେ ସେ ନିଜ ଦେହରେ ହରାଇଥିବା ଅଙ୍ଗକୁ ପୁଣି ସୃଷ୍ଟି କରେ । ଏହି ପ୍ରକାର ଅଦ୍ଭୁତ ଗୁଣ ପୃଥିବୀ ପୃଷ୍ଠର କୌଣସି ପ୍ରାଣୀର ପ୍ରାୟ ନାହିଁ ।

●

# ଟେନିସ ବଲର ଶିଶୁ

ତୁମ୍ଭମାନଙ୍କ ମଧ୍ୟରୁ ଅଧିକାଂଶ ଟେବୁଲ ଟେନିସ ଖେଳିବାକୁ ଭଲ ପାଉଥିବ ନିଶ୍ଚୟ । ଏକ ବଡ଼ ଟେବୁଲ ମଝିରେ ନେଟ ବନ୍ଧାଯାଇ ଏକ ଧଳା ଛୋଟ ବଲରେ ଏହି ଖେଳ ହୁଏ । ଏହି ଧଳା ବଲର ଆକୃତି କୁକୁଡା ଅଣ୍ଡାଠାରୁ ଟିକେ ଛୋଟ ଏବଂ ଗୋଲାକାର । ଏହି ବଲର ଆକୃତି ପରି କେଉଁ ପ୍ରାଣୀର ଅଣ୍ଡା ତୁମେ କହିପାରିବ କି ?

ତୁମ୍ଭମାନଙ୍କ ମଧ୍ୟରୁ ସମସ୍ତେ ପ୍ରାୟ କଇଁଛ ଠେକୁଆ ଗପ ନିଶ୍ଚୟ ଶୁଣିଥିବ । ଥରେ ଗୋଟିଏ ଠେକୁଆ ସହିତ ଏକ କଇଁଛର ଗୋଟିଏ ପୋଖରୀ କୂଳରେ ଦେଖାହେଲା । ଠେକୁଆ ଶୀଘ୍ର ଦୌଡ଼ିପାରୁଥିବାରୁ ତା ମନରେ ଭାରି ଗର୍ବ । ମାତ୍ର କଇଁଛ ତ ଦୌଡ଼ିପାରେ ନାହିଁ । ତାର ଚାରିଗୋଟି ଛୋଟ ଗୋଡ଼ରେ ବିରାଟ ଓଜନିଆ ଶରୀରକୁ ଧରି ଧୀରେ ଧୀରେ ଚାଲେ । ଠେକୁଆ କଇଁଛକୁ ଅପମାନିତ କରିବାକୁ ତା ସହିତ ଏକ ଦୌଡ ପ୍ରତିଯୋଗିତା କରିବାକୁ ତାକୁ କହିଲା । କଇଁଛ ଠେକୁଆର ଅହଂକାର ଓ ଗର୍ବ ଭାବ ବୁଝିପାରିଲା । ମାତ୍ର ସେ ନିଶ୍ଚୟ ହାରିଯିବ ଜାଣି ମଧ୍ୟ ତା କଥାରେ ରାଜି ହେଲା । ପ୍ରତିଯୋଗିତା ଆରମ୍ଭ ହେଲା । ମାତ୍ର ଅଳସୁଆ ଠେକୁଆ କିଛି ଦୂର ଦୌଡ଼ିଯାଇ ବହୁ ଆଗକୁ ଚାଲିଯାଇଛି ଭାବି ଗଛ ମୂଳରେ ଶୋଇପଡ଼ିଲା । ଚାଲାଖ ତଥା କର୍ମଠ କଇଁଛ ନିଜ କାର୍ଯ୍ୟରେ ହେଳା ନ କରି ଚାଲିବାରେ ଲାଗି ଶେଷରେ ଆଗ ପହଞ୍ଚିଲେ ଦୌଡ଼ ପ୍ରତିଯୋଗିତାରେ ବିଜୟୀ ହେଲା । ଏହି ଗପ ଶୁଣି ତୁମେ ସବୁ କଇଁଛର କର୍ମପ୍ରବଣତା, ଏକାଗ୍ରତା ଓ ନିଷ୍ଠାପରତା ବିଷୟରେ ଜାଣିଛ । ମାତ୍ର ଅଧିକାଂଶ ବୋଧହୁଏ କଇଁଛକୁ ଦେଖିନଥିବ ବା ତା ବିଷୟରେ ବିଶେଷ କିଛି ଜାଣିନଥିବ ।

ପୁରାଣରୁ ବିଷ୍ଣୁଙ୍କ ଦଶ ଅବତାର ମଧ୍ୟରୁ କଇଁଛ ଅବତାର ଅନ୍ୟତମ । ପୁରାଣରେ ଏହି କଇଁଛ ହିଁ ଆମ ବିଶ୍ୱକୁ ଧରି ରଖିଛି ବୋଲି

ଉଲ୍ଲିଖିତ ଅଛୁ । ତେଣୁ ହିନ୍ଦୁମାନେ କଇଁଛକୁ ଏକ ଧାର୍ମିକ ପ୍ରାଣୀ ରୂପେ ମାନିଥାନ୍ତି । ଉତ୍ତର ଭାରତର ଲୋକେ ଏହାକୁ ଯମୁନାମାତାଙ୍କର ବାହନ ରୂପେ ପୂଜା କରିଥାନ୍ତି । କଇଁଛ ଦେହ ସହିତ ତାର ଓଜନିଆ ଘର ଲାଗି ରହିଥାଏ । ଏକ ମୋଟା, ଟାଣ ଖୋଳପା ଏହାର ସମଗ୍ର ଶରୀରକୁ ଘୋଡ଼ାଇ ରଖି ବିପଦ ଆପଦରୁ ଏହାର ଶରୀରକୁ ରକ୍ଷା କରିଥାଏ । ତୁମ୍ଭେମାନେ କଇଁଛକୁ ଦେଖିଲେ ଏହାର ଖୋଳପା, ଛୋଟ ସରୁ ମୁହଁ ଓ ଚାରିଗୋଟି ଛୋଟ ଗୋଡ଼ ଦେଖିବାକୁ ପାଇବ । ଆମ ପୃଥିବୀ ପୃଷ୍ଠର ପ୍ରାୟ ସବୁ ଅଞ୍ଚଳରେ କଇଁଛମାନେ ଦେଖାଯାଆନ୍ତି । ତିନି ପ୍ରକାରର



କଇଁଛ ପୃଥିବୀର ବିଭିନ୍ନ ଅଞ୍ଚଳରେ ଦେଖିବାକୁ ମିଳିଥାନ୍ତି । ସେମାନେ ହେଲେ ସମୁଦ୍ରରେ ବାସ କରୁଥିବା ବିରାଟକାୟ କଇଁଛ । ଭୂମି ଓ ଜଳରେ ବାସ କରୁଥିବା ଉଭୟଚର କଇଁଛ ଏବଂ ନଦୀ ନାଳରେ ବାସ କରୁଥିବା ଛୋଟ କଇଁଛ । କେତେକ ଶ୍ରେଣୀର କଇଁଛର ଲମ୍ବ ଆଠ ଫୁଟରୁ ଅଧିକ । ଏମାନେ ଏକ ପୁରାତନ ପ୍ରାଣୀ । କେବେଠାରୁ ଏମାନେ ପୃଥିବୀ ପୃଷ୍ଠରେ ଦେଖାଦେଲେ ତାହା ଠିକ୍‌ଭାବେ ଜଣାପାଇ ନାହିଁ । ସାଧାରଣତଃ ଗରମ ଜଳବାୟୁ ବା ଗ୍ରୀଷ୍ମମଣ୍ଡଳୀୟ ଅଞ୍ଚଳରେ କଇଁଛମାନେ ବେଶୀ ସଂଖ୍ୟାରେ ଦେଖାଯାଇ ଥାଆନ୍ତି ।

କଇଁଛର ଟାଣ ଖୋଳପା ମଧ୍ୟରେ ଲୁଚି ରହିଥିବା ମୁହଁରେ ଦାନ୍ତ ନାହିଁ । ପୃଥିବୀ ପୃଷ୍ଠରେ ଦେଖାଯାଉଥିବା କୌଣସି କଇଁଛର ମଧ୍ୟ ଦାନ୍ତ ନାହିଁ । ମାତ୍ର ଏହାର ମୁଖର ମାଢ଼ି ଏତେ ଟାଣ ଯେ ଏହା ଯେ

କୌଣସି ଜନ୍ତୁଙ୍କୁ ସହଜରେ ଛୁଣ୍ଡାଇ ନେଇପାରେ । କେତେକ ଶ୍ରେଣୀର କଇଁଛର ଲମ୍ବା ବେକ ଥିବା ମୁହଁ ଓ ଲମ୍ବା ଲାଞ୍ଜ ଥାଏ । କଇଁଛର ରଙ୍ଗ ସବୁଜ, କାଦୁଆ, କଳା ଓ କଳା ଚିହ୍ନଯୁକ୍ତ ହଳଦିଆ ହୋଇଥାଏ । କେତେକ ସମୁଦ୍ର ବା ଜଳାଶ୍ରୟରେ ବାସ କରୁଥିବା କଇଁଛ ପିଠିରେ ସବୁଜ ଛୋଟ ଛୋଟ ଗଛ ବଢ଼ି ଏହାକୁ ମାଟି ସହିତ ମିଶାଇ ଦେଇ ଶତ୍ରୁ ଆକ୍ରମଣରୁ ରକ୍ଷା କରିଥାଏ । ଚାରିଗୋଟି ଛୋଟ ଗୋଡକୁ ଆହୁଲା ଆକାରରେ ବ୍ୟବହାର କରି କଇଁଛ ଜଳ ମଧ୍ୟରେ ସହଜରେ ପହଁରି-ପାରେ । ସାଧାରଣତଃ ଫୁସ୍‌ଫୁସ୍ ସାହାଯ୍ୟରେ କଇଁଛ ଶ୍ୱାସକ୍ରିୟା ସଂପାଦନ କରିଥାଏ । ଅନେକ ସମୟରେ କେତେକ ଶ୍ରେଣୀର କଇଁଛ ପାଣି ଉପରକୁ ବେକ ନେଇ ପବନ ଗ୍ରହଣ କରି ଶ୍ୱାସକ୍ରିୟା ପାଇଁ ବ୍ୟବହାର କରେ ମାତ୍ର କେତେକ ଜଳରେ ବାସ କରୁଥିବା କଇଁଛର ଶ୍ୱାସକ୍ରିୟା ପାଇଁ ଦୁଇ ହଳ ମୁଣା ବା ଶ୍ୱାସଯନ୍ତ୍ର ଥାଏ । ଯାହା ସାହା-ଯ୍ୟରେ ଏମାନେ ଶ୍ୱାସକ୍ରିୟା ସମ୍ପାଦନ କରିଥାନ୍ତି । ଜଳ ମଧ୍ୟରୁ ବହୁ ଛୋଟବଡ଼ ପ୍ରାଣୀ, ଜଳ ପକ୍ଷୀ, ମାଛ ପ୍ରଭୃତିଙ୍କୁ କଇଁଛ ଧରି ଖାଇଥାଏ । ପ୍ରତିବର୍ଷ ଜୁନ, ଜୁଲାଇ ମାସରେ ମା କଇଁଛ ଜଳଭାଗରୁ ସ୍ଥଳଭାଗକୁ ଆସି ଏକ ଶୁଖିଲା, ନରମ ସ୍ଥାନ ବାଛି ସେଠାରେ ପଛ ଗୋଡ଼ ସାହାଯ୍ୟରେ ଗାତ ଖୋଳେ ଏବଂ ଏହି ଗାତରେ ୨୫ରୁ ୨୦୦ ଯାଏ ଧଳା ଟେନିସ ବଲ ଆକୃତିର ଗୋଲାକାର ଅଣ୍ଡା ଦିଏ । ଏହି ଅଣ୍ଡାର ଖୋଳପା ଟାଣ । କୁକୁଡ଼ା ଅଣ୍ଡାଠାରୁ ଏହା ଛୋଟ । ଅଣ୍ଡା ଦେବାପରେ ବାଲିମାଟିରେ ଅଣ୍ଡାକୁ ଘୋଡ଼ାଇ ଦେଇ ପୁଣି ମା କଇଁଛ ଜଳାଶ୍ରୟକୁ ଖାଦ୍ୟ ଉଦ୍ଦେଶ୍ୟରେ ଚାଲିଯାଏ । ଏହି ଅଣ୍ଡାଗୁଡ଼ିକ ବହୁ ସପ୍ତାହ ଧରି ଏହି ଗାତ ଭିତରେ ରହିବା ପରେ ଫାଟେ ଏବଂ ଏଥିରୁ ଛୋଟ ଛୋଟ କଇଁଛ ଛୁଆ ଜନ୍ମ ହୁଅନ୍ତି । ଶିଶୁ କଇଁଛ ପାଟିରେ ଥିବା ଏକ ଧାରୁଆ ଅଂଶ ସାହାଯ୍ୟରେ ଏହା ଅଣ୍ଡାକୁ ଭାଙ୍ଗି ପଦାକୁ ବାହାରି ଆସେ । ଅଣ୍ଡାରୁ ପଦାକୁ ବାହାରିବା ପାଇଁ ଅନେକ ସମୟରେ ବହୁ କଇଁଛ ଶିଶୁଙ୍କୁ କଠୋର ସଂଗ୍ରାମ କରି ଟାଣ ଖୋଳପାକୁ ଫଟାଇବାକୁ ପଡ଼େ-ଥାଏ । ଏହାପରେ ଶିଶୁ କଇଁଛ ସିଧାସଳଖ ଜଳାଶ୍ରୟ ଆଡ଼କୁ ଆଗେଇ ଚାଲେ । ଜଳାଶ୍ରୟ ମଧ୍ୟରେ କ୍ରମେ ଏହା ପାଟିରେ ଥିବା ଦାନ୍ତ ବା ଧାରୁଆ

ଅଂଶ ଉଭେଇଯାଏ । ଜଳାଶ୍ରୟନ୍ତ୍ର ଖାଦ୍ୟ ସଂଗ୍ରହ କରି ଖାଇ ଏହା ବଞ୍ଚିବାରେ ଲଗେ । ଶୀତ ଦିନରେ ପ୍ରବଳ ଶୀତରୁ ରକ୍ଷା ପାଇବା ପାଇଁ ଏହା ଗଭୀର ପଙ୍କ ଭିତରକୁ ଗୃଳିଯାଏ ଏବଂ ସେଠାରେ ଲୁଚି ରହେ । ବସନ୍ତ ଋତୁ ଆସିଲେ ଏବଂ ଜଳାଶ୍ରୟ ବା ସମୁଦ୍ରର ଜଳ ଉତ୍ତପ୍ତ ହେଲେ ଏହା ଉପରକୁ ଉଠିଆସେ । ଗୋଟିଏ ଗୋଟିଏ କଇଁଛର ଓଜନ ପାଞ୍ଚଶହ ପାଉଣ୍ଡରୁ ମଧ୍ୟ ଅଧିକ ହୋଇଥାଏ । ପୃଥିବୀ ପୃଷ୍ଠରେ ବହୁ ଶ୍ରେଣୀର ବିଭିନ୍ନ ଆକୃତି ପ୍ରକୃତିର କଇଁଛ ଦେଖାଯାଇଥାନ୍ତି ।

ଆମ ଦେଶରେ କଇଁଛ ମାଂସ ଗରିବ, ମଫସଲ ଅଞ୍ଚଳର ଲୋକ ତଥା ଆଦିବାସୀମାନଙ୍କର ପ୍ରିୟ ଖାଦ୍ୟ । ସବୁଜ କଇଁଛର ମାଂସ ସବୁଠାରୁ ଲୋକପ୍ରିୟ । ସମୁଦ୍ରରୁ ମିଳୁଥିବା ଗୋଟିଏ ଶ୍ରେଣୀର କଇଁଛର ମାଂସ ସବୁଦେଶର ଲୋକଙ୍କର ପ୍ରିୟ ଖାଦ୍ୟ । ଏହା ସୁସ୍ୱାଦୁ ମଧ୍ୟ । ଏକ ଶ୍ରେଣୀର ସବୁଜ କଇଁଛ ସମୁଦ୍ର ଉଦ୍ଭିଦରୁ ପ୍ରୋଟିନ ବା ପୁଷ୍ଟିସାର ଜାତୀୟ ଖାଦ୍ୟ ସୃଷ୍ଟି କରିବାରେ ସାହାଯ୍ୟ କରିଥାନ୍ତି । ଆମ ଦେଶରେ ସାଧାରଣତଃ ବଙ୍ଗଳା ଦେଶ ଓ ପଶ୍ଚିମବଙ୍ଗର ଲୋକମାନେ କଇଁଛ ମାଂସ ଏବଂ ଅଣ୍ଡା ବହୁ ପରିମାଣରେ ଖାଇଥାନ୍ତି । କଇଁଛ ପିଠିରୁ ତିଆରି ହେଉଥିବା ଏକ ପ୍ରକାର ତେଲ ଓଙ୍ଗା ଓ ଲଞ୍ଚ ପ୍ରଭୃତିର ମରାମତିରେ ବ୍ୟବହୃତ ହୋଇଥାଏ । କେତେକ କଇଁଛର ଖୋଳପାରୁ ସୌଖୀନ ଗହଣା ଓ ଦାମିକା ପାନିଆଁ ପ୍ରଭୃତି ତିଆରି ହୋଇଥାଏ ।

ପୃଥିବୀପୃଷ୍ଠରେ ପରିବେଶ ରକ୍ଷା କରିବାରେ କଇଁଛର ଅବଦାନ ବହୁତ ବେଶୀ । ଏହାର ଚମଡ଼ା ମଧ୍ୟ ବହୁ ମୂଲ୍ୟବାନ । ପାଇଲ୍‌ସ,ଚକ୍ଷୁରୋଗ, ବ୍ରଣ ଓ ଶ୍ରବଣ ସମସ୍ୟା, ପାକସ୍ଥଳୀର ରୋଗ, ଅଣ୍ଡା, ଯକ୍ଷ୍ମା ପ୍ରଭୃତି ମାରାତ୍ମକ ରୋଗର ଅବ୍ୟର୍ଥ ଔଷଧ କୁବଜା କଇଁଛ ଦେହରୁ ପ୍ରସ୍ତୁତ ହୋଇଥାଏ । ତେଣୁ ଏହି ନିରୀହ ଜୀବ ଆମ ମଣିଷ ସମାଜର କେତେ ଉପକାରୀ ଏହିଥିରୁ ହିଁ ସହଜରେ ଜଣାପଡ଼ିବ ।

ଆମ ଦେଶରେ କ୍ରମାଗତ ମଣିଷମାନଙ୍କ ଦ୍ୱାରା କଇଁଛ ଶୀକାର ଦ୍ୱାରା ଏହାର ସଂଖ୍ୟା କମିବାରେ ଲଗିଛି । ପ୍ରତିବର୍ଷ ନଭେମ୍ବରରେ

ଓଡ଼ିଶାର ଗହୀରମଥା ଠାରୁ ପାରାଦ୍ୱୀପ ଉପକୂଳ ସମୁଦ୍ର ତଟରେ ଅଣ୍ଡା ଦେବାକୁ ଆସୁଥିବା ଲକ୍ଷ ଲକ୍ଷ ସମୁଦ୍ର କଇଁଛ ଏ ବର୍ଷ ପ୍ରାୟ ଆସି ନ ଥିବାରୁ ଏହା ଘୋର ଉଦବେଗର କାରଣ ହୋଇଛି । ଅଣ୍ଡା ଦେବାକୁ ଏମାନେ ଆସୁଥିବା ବେଳେ ବହୁ କଇଁଛ ଶିକାରୀ ସେମାନଙ୍କୁ ଜାଲ ସାହାଯ୍ୟରେ ନିର୍ଦ୍ଦୟରେ ଧରି ନେଇ ଯାଉଥିବାରୁ ଏହାର ବଂଶ ରକ୍ଷା ଦିଗରେ ବର୍ତ୍ତମାନ ସଙ୍କଟ ଦେଖାଦେଇଛି । ଏଥିପାଇଁ ସରକାରୀ ସ୍ତରରେ ଉଦ୍ୟମ ନ ହେଲେ ପୃଥିବୀର ଏହି ପୁରାତନ ପ୍ରାଣୀ ଆସ୍ତେ ଆସ୍ତେ ପୃଥିବୀ ପୃଷ୍ଠରୁ ଉଭେଇଯିବ । ପ୍ରକୃତି ତଥା ମାନବ ସମାଜର ବହୁ ଉପକାର କରୁଥିବା ବନ୍ଧୁ ଏହି ନିରୀହ ପ୍ରାଣୀକୁ ରକ୍ଷା କରିବା ପାଇଁ ଆମେ ସମସ୍ତେ ଚିନ୍ତା କରିବା ଆବଶ୍ୟକ । ନଚେତ ଆଗପଛ କିଛି ନ ଭାବି ଏହିପରି ଭାବରେ ବେପରୁଆ କଇଁଛ ଶୀକାର ଚାଲୁରହିଲେ ଖୁବ୍ ନିକଟ ଭବିଷ୍ୟତରେ ଅଜଗର ସାପ, କୋଚିଲାଖାଇ ଚଢ଼େଇ, ହରିଣ, ବାଘ, ଚିତାବାଘ ଭଳି କଇଁଛ ବଂଶ ଖୁବଶୀଘ୍ର ଲୋପ ପାଇଯିବ ଏବଂ ଭବିଷ୍ୟତରେ ଏହି ଜନ୍ତୁ ଚିଡ଼ିଆଖାନାରେ ହିଁ କେବଳ ଆବଦ୍ଧ ହୋଇ ରହିବା ଅବସ୍ଥାକୁ ହିଁ ଆସିଥିବ ଏଥିରେ କିଛି ସନ୍ଦେହ ନାହିଁ ।



# ଚିନି ଖାଉଥିବା ଉଦ୍ଭିଦ

ତୁମ୍ଭମାନଙ୍କୁ ମିଠା ଖାଇବାକୁ ଖୁବ ଭଲଲାଗେ । ମିଠା ରସଗୋଲା, ଗୋଲାପଜାମୁ, ମିଠେଇ ସବୁ ଦେଖି ପାଟିରୁ ଲାଳ ଗଡ଼େ । ଅଧିକାଂଶ ଚକଲେଟ ଖାଇବାକୁ ଖୁବ ଭଲ ପାଅ । ମାତ୍ର ତୁମେମାନେ ଯେପରି ମିଠା ଖାଇବାକୁ ଭଲ ପାଅ ଆମ ପୃଥିବୀ ପୃଷ୍ଠରେ ଥିବା ଅନ୍ୟାନ୍ୟ ଜୀବଜନ୍ତୁ ମିଠା ପ୍ରିୟ କି ? ସେ ବିଷୟରେ ବିଶେଷ କିଛି ଜଣାନାହିଁ । କେତେକ ପ୍ରାଣୀ ମିଠା ଖାଇବାକୁ ଭଲ ପାଆନ୍ତି କେତେକ ମଧ୍ୟ ଆଦୌ ଖାଆନ୍ତି ନାହିଁ । ମିଠା ବା ଶର୍କରା ଜାତୀୟ ଖାଦ୍ୟ ପଦାର୍ଥ ଆମ ଶରୀରକୁ ଯାଇ ଆମ ଶରୀରକୁ ଶକ୍ତି ଯୋଗାଇଥାଏ ମାତ୍ର ଆମେ ଯଦି ଅତ୍ୟଧିକ ମିଠା ଜିନିଷ ଖାଇବା ତାହା ଶରୀର ପକ୍ଷରେ କ୍ଷତିକାରକ ହୋଇଥାଏ ।

ମାତ୍ର କେତେକ ଉଦ୍ଭିଦ ମଧ୍ୟ ମିଠା ପ୍ରିୟ ଏବଂ ସେମାନେ ମିଠା ଖାଇବାକୁ ଖୁବ ଭଲ ପାଆନ୍ତି । ଏପରିକି କେବଳ ମିଠା ଦେହରେ ଏମାନେ ଦେଖାଦେଇ ବଢ଼ିଥାଆନ୍ତି । ଏପରି ଉଦ୍ଭିଦ ବିଷୟରେ ତୁମ୍ଭେମାନେ କିଛି ଜାଣିଛ କି ? ଏପ୍ରକାର ଏକ ମିଠା ପ୍ରିୟ ଉଦ୍ଭିଦ ହେଉଛି ଇଷ୍ଟ । ଗବେଷଣାଗାରରେ ଇଷ୍ଟ କଲଚର କରାଯାଇ ପାରିବ । ଚିନିପାଣି ବା ମିଠା ପଦାର୍ଥ ଉପରେ ଖଣ୍ଡେ ଇଷ୍ଟ ଉଦ୍ଭିଦ ଥିବା ପଦାର୍ଥ ରଖିଦେଲେ ଏହା ଆପେ ଆପେ ଖୁବ୍ ଶୀଘ୍ର ଶହ ଶହ ଇଷ୍ଟ ଉଦ୍ଭିଦ ସେଠାରେ ସୃଷ୍ଟି କରିଦେବ । ଚିନି ବା ମିଠା ଥିବା ପାଣି ବା ଦ୍ରବଣରେ ଇଷ୍ଟ ଖୁବଶୀଘ୍ର ଦ୍ରୁତ ଗତିରେ ବଢ଼ିଥାଏ । ଏପରିକି ଗୋଟିଏ ଦିନ ମଧ୍ୟରେ ଆମେ ଲକ୍ଷ ଲକ୍ଷ ସଂଖ୍ୟକ ଇଷ୍ଟ ଉଦ୍ଭିଦ ପାଇପାରିବା ।

ଇଷ୍ଟ ଉଦ୍ଭିଦର ଏକ ବଡ଼ ଗୁଣ ହେଉଛି ଏହା ସୁଗାର ବା ଶର୍କରାକୁ ସୁରା ଏବଂ ଅଙ୍ଗାରକାମ୍ଳ ଗ୍ୟାସରେ ପରିଣତ କରିଥାଏ ।

ଇଷ୍ଟ ଉଦ୍ଭିଦର ଏହି ସ୍ୱତନ୍ତ୍ର ଗୁଣ ଥିବାରୁ ଏହାକୁ ମଦ ତିଆରି କାରଖାନା, ପାଉଁରୁଟି ତିଆରି କାରଖାନା ଏବଂ ଗବେଷଣାଗାର ବା ବିଜ୍ଞାନାଗାରରେ ବ୍ୟବହାର କରାଯାଏ । ଏହା ବ୍ୟକ୍ତିଗତ ପାଉଁରୁଟି ତିଆରି କାରଖାନାରେ ପାଉଁରୁଟି ଦେହରେ ଛୋଟ ଛୋଟ କଣା ସୃଷ୍ଟି କରି ଏହାକୁ ନରମ କରିବାରେ ଇଷ୍ଟ ସାହାଯ୍ୟ କରିଥାଏ ।

ପୂର୍ବେ ଯେତେବେଳେ ପାଉଁରୁଟି ପରି ନରମ ଖାଦ୍ୟ ଲୋକ-ମାନଙ୍କୁ ଜଣା ନ ଥିଲା ସେତେବେଳେ ଲୋକେ ଖୁବ କଠିନ ରୁଟି ଖାଉଥିଲେ । ଏହାକୁ ସମସ୍ତେ ଖାଇପାରୁ ନ ଥିଲେ । ସେତେବେଳେ ଏହାକୁ ନରମ କରିବା ପ୍ରଣାଳୀ ଲୋକମାନଙ୍କୁ ଜଣା ନ ଥିଲା । ସମୟକ୍ରମେ ଲୋକେ ଦେଖିଲେ ଯେ ଯଦି ଏହି ଚାଣ ରୁଟିକୁ ଏକ ଗରମ ସ୍ଥାନରେ କିଛି ସମୟ ରଖି ଦିଆଯାଉଛି ତେବେ ଏହି କଠିନ ରୁଟି ଦେହରେ ଛୋଟ ଛୋଟ କଣାମାନ ସୃଷ୍ଟି ହୋଇ ଏହା ଅତ୍ୟନ୍ତ ନରମ ଓ ସୁସ୍ୱାଦୁ ଖାଦ୍ୟରେ ପରିଣତ ହୋଇଯାଉଛି । ତେଣୁ ପୂର୍ବକାଳର ଲୋକେ ଏହି ପ୍ରକ୍ରିୟାରେ ନରମ ରୁଟି ପ୍ରସ୍ତୁତ କରି ଖାଉଥିଲେ । ମାତ୍ର ଏହା କିପରି ଓ କାହାଦ୍ୱାରା ହେଉଛି ତାହା ସେମାନଙ୍କୁ ଜଣା ନ ଥିଲା । ଦୂରବୀକ୍ଷଣ ଯନ୍ତ୍ରର ଉଦ୍ଭାବନ ପରେ ଇଷ୍ଟ ବିଷୟରେ ଲୋକେ ଜାଣିବାକୁ ପାଇଲେ । ଏହି ଇଷ୍ଟ ମଧ୍ୟ ସୁସ୍ୱାଦୁ ମିଠା ଫଳ ରସକୁ ଆମ୍ଳିଲା ଓ ତିକ୍ତ କରିଦେଇଥାଏ । ବାୟୁ-ମଣ୍ଡଳରେ ସବୁଆଡ଼େ ଶହ ଶହ ଇଷ୍ଟ ଉଦ୍ଭିଦ ବୁଲୁଥାଆନ୍ତି । ଏହି ଇଷ୍ଟ ଉଦ୍ଭିଦର କୋଷରେ ପ୍ରଚୁର ପୁଷ୍ଟିସାର ଥିବାରୁ ଏହା ମଧ୍ୟ ବିଭିନ୍ନ ପ୍ରକାରର ଔଷଧ ତିଆରିରେ ବ୍ୟବହୃତ ହୋଇଥାଏ ।

ଅନ୍ୟାନ୍ୟ ଜୀବନ୍ତ ଉଦ୍ଭିଦଙ୍କ ପରି ଇଷ୍ଟ ଉଦ୍ଭିଦ ବଢ଼ିବା ସମୟରେ ବା ବଂଶବୃଦ୍ଧି କରିବା ସମୟରେ ଖାଦ୍ୟ ଆବଶ୍ୟକ କରେ ନାହିଁ । ମାତ୍ର ଏହା ସବୁବେଳେ ଅଙ୍ଗାରକାମ୍ଳ ପଦାର୍ଥ ନିଜଠାରୁ ପରାକୁ

ବାହାର କରୁଥାଏ । ଯେତେବେଳେ ଇଷ୍ଟ ଉଦ୍ଭିଦ ଚିନି ବା ଶର୍କରା ଜାତୀୟ ପଦାର୍ଥକୁ ଖାଦ୍ୟରୂପେ ବ୍ୟବହାର କରେ ସେତେବେଳେ ଏହା ଅଙ୍ଗାରକାମ୍ଳ ଗ୍ୟାସ ଓ ସୁରା ବା ଆଲକହଲ ପଦାର୍ଥକୁ ବାହାର କରିଥାଏ । ଅଙ୍ଗାରକାମ୍ଳ ଗ୍ୟାସକୁ ପ୍ରାୟ ସବୁ ସବୁଜ ଉଦ୍ଭିଦ ନିଜର ଖାଦ୍ୟ ପ୍ରସ୍ତୁତ ସମୟରେ ଆବଶ୍ୟକ କରିଥାନ୍ତି ମାତ୍ର ଇଷ୍ଟ ଉଦ୍ଭିଦ ନିଜର ଖାଦ୍ୟ ନିଜେ ପ୍ରସ୍ତୁତ କରୁନଥିବାରୁ ଅଙ୍ଗାରକାମ୍ଳ ଗ୍ୟାସର କୌଣସି ଆବଶ୍ୟକତା ଉପଲବ୍ଧି କରନ୍ତିନାହିଁ ।

ଟାଣ ପାଉଁରୁଟି ଦେହରେ ଇଷ୍ଟ ଉଦ୍ଭିଦ କିପରି ଗ୍ରେଟ ଗ୍ରେଟ କଣା ସୃଷ୍ଟି କରିଥାଏ ତାହା ତୁମେମାନେ ଜାଣ କି ?

ସାଧାରଣତଃ ପାଉଁରୁଟି ତିଆରି ହେବାପୂର୍ବରୁ ମଇଦା, ଅଟା, ଚିନି, ପାଣି, ଲବଣ ଇତ୍ୟାଦି ମିଶାଯାଇ ଫେଣ୍ଟା ହୁଏ । ମିଠା ଥିବା ଏହି ମୋଟା ଅଟାଗୁଳାରେ ଇଷ୍ଟ ଉଦ୍ଭିଦ ବଢ଼ିଥାନ୍ତି । ଇଷ୍ଟ ଉଦ୍ଭିଦ ଚିନିକୁ ଖାଦ୍ୟ ରୂପେ ଗ୍ରହଣ କରି ଅଙ୍ଗାର-କାମ୍ଳ ଗ୍ୟାସ ଓ ସୁରା ବା ଆଲକହଲ ଦେବାକୁ ଛାଡ଼ିଥାନ୍ତି । ଏହି ଅଙ୍ଗାରକାମ୍ଳ ଗ୍ୟାସ ଟାଣୁଆ ଅଟାକୁ ଠେଲି ଏଥିରେ ଛୋଟ ଛୋଟ ଘର ବା କୋଠରୀ କରି ସେଥିରେ ରହିଥାଏ । ଏବଂ ଏହିପରି ଭାବରେ ପାଉଁରୁଟି ଦେହରେ ଛୋଟ ଛୋଟ ଗ୍ୟାସର ପକେଟ ବା ଘର ସୃଷ୍ଟି ହୋଇଥାଏ । ଏହା ଫଳରେ ପାଉଁରୁଟି ଅଟା ବହୁ ଗୁଣରେ ଗ୍ୟାସ ପକେଟ ଦ୍ୱାରା ପୂର୍ଣ୍ଣହୋଇ ଫୁଲିଯାଏ ଏବଂ ବହୁତ ବଡ଼ ହୋଇଯାଏ । ଯେତେବେଳେ ଏହି ପାଉଁରୁଟି ଅଟାକୁ ଗରମ ଆଞ୍ଚ ଉପରେ ରଖି ଦିଆଯାଏ ସେତେବେଳେ ସମସ୍ତ ଇଷ୍ଟ ଉଦ୍ଭିଦ ମରିଯାଇ ଥାଆନ୍ତି । ସୁରା ବାଷ୍ପୀକରଣ ହୋଇଯାଏ ଏବଂ ଅଙ୍ଗାରକାମ୍ଳ ବାଷ୍ପ ଛୋଟ ଛୋଟ କଣାକୁ ଫୁଟାଇ ବାୟୁମଣ୍ଡଳକୁ ଚାଲିଯାଏ । ଏହାପରେ ଆମ୍ଭେମାନେ ବହୁ କଣା ଥିବା ନରମ ସୁସ୍ୱାଦୁ ପାଉଁରୁଟିଟିଏ ପାଇଥାଉ । ଫଳରସରୁ ମଧ୍ୟ ଏହିପରି ଇଷ୍ଟ ଉଦ୍ଭିଦ ମଦ ତିଆରି କରିଥାଏ । ଫଳରସରେ ଇଷ୍ଟ ଉଦ୍ଭିଦ ବଢ଼ି ଏଥିରେ ଅଙ୍ଗାରକାମ୍ଳ ଗ୍ୟାସ ଓ ସୁରା ଛାଡ଼ିଥାନ୍ତି ।

ଅଙ୍ଗାରକାମ୍ଳ ଗ୍ୟାସ ବାୟୁଫୋଟକା ହୋଇ ଫଳରସରୁ ବାହାରକୁ ଚାଲିଯାଏ ମାତ୍ର ସୁରା ବା ଆଲକହଲ ଫଳରସରେ ମିଶି ଏହାକୁ ମଦ କରିଦିଏ ।

ଏପରି ପ୍ରକାର କାମ କରୁଥିବା ମିଠାପ୍ରିୟ ଏହି ଇଷ୍ଟ ଉଦ୍ଭିଦ ଏକକୋଷୀ ଏକ ସାଧାସିଧା ଉଦ୍ଭିଦ ଯାହାକୁ ଆମେ ଅଣୁବୀକ୍ଷଣ ଯନ୍ତ୍ର ବ୍ୟତୀତ ଖାଲି ଆଖିରେ ଆଦୌ ଦେଖିପାରିବା ନାହିଁ । ଏହା ଅଣୁବୀକ୍ଷଣ ଯନ୍ତ୍ରରେ ଏକ ଆଲପିନର ମୁଣ୍ଡ ଆକୃତିର ହୋଇଥାଏ ।

ଏକକୋଷୀ ଇଷ୍ଟ ଉଦ୍ଭିଦର କୋଷ ସାଧାରଣତଃ ଅଣ୍ଡାକୃତି ଏବଂ ଏକ କୋଷକାନ୍ଥ ଦ୍ୱାରା ଚତୁଃଅର୍ଦ୍ଧ ଆଚ୍ଛାଦିତ ହୋଇଥାଏ । ଏହି କୋଷ ମଧ୍ୟରେ କେତୋଟି ଶୂନ୍ୟସ୍ଥାନ, ଏକ ନ୍ୟୁକ୍ଲିୟସ ଓ ସାଇଟୋ-



**( ଗୋଟିଏ ଇଷ୍ଟ କୋଷ )**

ପ୍ଲାଜମ ବା କୋଷର ଜୀବନ୍ତ ପଦାର୍ଥ ଥାଏ । ସାଇଟୋପ୍ଲାଜମ ମଧ୍ୟରେ କେତେକ ପୁଷ୍ଟିସାର ପୂର୍ଣ୍ଣସ୍ଥାନ, ତୈଳଜାତୀୟ ଖାଦ୍ୟପୂର୍ଣ୍ଣ ସ୍ଥାନ ବା ଥଳୀ ଥାଏ । ଏହି ଏକକୋଷୀ ଉଦ୍ଭିଦ ସାଧାରଣତଃ ସାଧାସିଧା

ପ୍ରଣାଳୀରେ ବଂଶ ବିସ୍ତାର କରିଥାଏ । ବଂଶ ବୃଦ୍ଧି ସମୟରେ ମୂଳ କୋଷରୁ ବହୁ ଛୋଟ ଛୋଟ ଅଂଶ ବାହାରିଥାଏ । କ୍ରମେ ଏହି ଛୋଟ ଛୋଟ ଅଂଶ ବଡ଼ ହୋଇ ମୂଳ ମା କୋଷରୁ ବିଚ୍ଛିନ୍ନ ହୋଇ ନିଜେ ସ୍ୱତନ୍ତ୍ର ନୂତନ ଇଷ୍ଟ ଉଦ୍ଭିଦରେ ପରିଣତ ହୋଇଥାଏ । ଏହି ପ୍ରକ୍ରି-ୟାରେ ଖୁବ ଶୀଘ୍ର ବହୁ ନୂଆ ଇଷ୍ଟ କୋଷ ତିଆରି ହୋଇପାରିଥାନ୍ତି । ଅନ୍ୟ କେତେକ ଇଷ୍ଟ ଉଦ୍ଭିଦ ବଂଶବୃଦ୍ଧି ସମୟରେ ଲମ୍ବ ଭାବରେ ବଢ଼ିଯାଆନ୍ତି । ଏହାର ଶେଷରେ ଥିବା ଜନନ ପଦାର୍ଥ ବା ନ୍ୟୁକ୍ଲିୟସ ଦୁଇଭାଗରେ ବିଭକ୍ତ ହୁଏ ଏବଂ କ୍ରମେ ଏହି ମୂଳ କୋଷ ୨ଟି ନୂଆ ଶିଶୁ ଇଷ୍ଟ କୋଷରେ ପରିଣତ ହୋଇଥାଏ । କେତେକ ଇଷ୍ଟ ଉଦ୍ଭିଦ ମଧ୍ୟ ସେକ୍ସୁଆଲ ପଦ୍ଧତିରେ ବଂଶବୃଦ୍ଧି କରିଥାନ୍ତି । ଏହି ପ୍ରଣାଳୀରେ ଦୁଇଟି ଇଷ୍ଟ କୋଷ ମିଶି ପୁଣି ବିଭକ୍ତ ହୋଇ ବଂଶବୃଦ୍ଧି କରିଥାନ୍ତି ।

ଏହି ଏକ କୋଷୀ ଉଦ୍ଭିଦ ଆମର ବହୁ ଉପକାର କରିଥାଏ । ବହୁ କଳ କାରଖାନାରେ ଏହାର ଆବଶ୍ୟକତା ବହୁତ ବେଶୀ । ତେଣୁ ଅଧିକାଂଶ ସ୍ଥାନରେ ଇଷ୍ଟ କଲଚର କରାଯାଇଥାଏ । କେତେକ ଇଷ୍ଟ ମଧ୍ୟ ମାରାତ୍ମକ । ଏମାନେ ଏକ ପ୍ରକାର ଦୁର୍ଗନ୍ଧ ନିଜ ଦେହରୁ ସୃଷ୍ଟି କରିଥାନ୍ତି । ଏହା ଚିନି ବା ମିଠା ଲାଗୁଥିବା ଫଳକୁ ନଷ୍ଟ କରି ଦେଇ-ଥାଏ । କେତେକ ମଧ୍ୟ ମଣିଷ ଦେହରେ ପାରାସାଇଟ ବା ପରଜୀବୀ ରୂପେ ଦେଖାଦେଇ ବିଭିନ୍ନ ରୋଗ ସୃଷ୍ଟି କରିଥାନ୍ତି । କ୍ରିପଟୋକୋକସିସ ନାମକ ଏକ ରୋଗ କେତେକ ଇଷ୍ଟ ସୃଷ୍ଟି କରିଥାନ୍ତି ।

